# ନୀଳେ ଶ୍ରୀକୃଷ୍ଣ ଚୈତନ୍ୟ ।



ବାବାଜୀ ଶ୍ରୀ ପଦ୍ମଚରଣ ଦାସ ।

# ଉତ୍କଳେ ଶ୍ରୀକୃଷ୍ଣ ଚୈତନ୍ୟ ।

---

ବାବାଜୀ ଶ୍ରୀ ପଦ୍ମଚରଣ ଦାସଙ୍କ ଦ୍ୱାରା
ରଚିତ ଓ

ଶ୍ରୀ ମଧୁସୂଦନ ଦାସଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ ।



Printed by H. M. Dutta.
at the Dutta Press
CUTTACK.
1926.

ମୂଲ୍ୟ ୪ ୦ । ଚଉଦ ଅଣା ମାତ୍ର ।



# ଉତ୍କଳେ ଶ୍ରୀକୃଷ୍ଣ ଚୈତନ୍ୟ ।

ଜୟ ଶ୍ରୀ ଗମ୍ଭୀରନାଥ ସଦା ଜୟ ତୋର
କରୁଛୁ ନିତ୍ୟ ବିହାର ମହୋଦଧି ତୀର
ସଙ୍ଗେ ଘେନି ରାମାନନ୍ଦ ସ୍ୱରୂପ ଦାମୋଦରେ,
ଗଦାଧର ନରହରି ପ୍ରିୟ ପରିକର ।
କଲି ବାସ ବହୁବାର ମୁଁ ଗମ୍ଭୀରା ପାଶ
କିନ୍ତୁ କାହିଁ ନ ଦେଖିଲି ତୋ ଲୀଳା ବିଳାସ
ଖୋଜିଲି ବକୁଳମୂଳେ ଯାଇ ବାର ବାର
ଅଛିଥିବେ ମହାପ୍ରଭୁ ହରିଦାସ ପାଶ ।
କରୁଥିବେ ତାଙ୍କ ସଙ୍ଗେ ମଧୁର ଅଳାପ
ଦେଖିଣ ନବଭୂମାଳୀ ରୂପ ସନାତନ
ଶୁଣୁଥିବେ କୃଷ୍ଣ କଥା ରସ ପରିପାଟି
ସ୍ୱରୂପ ମୁଖ ନିଃସୃତ ସରସ କବିତା ।
ଖୋଜି ଖୋଜି ତହିଁ ନ ପାଇଲି ଅଣୁମାତ୍ର
କାହାର ସନ୍ଧାନ, ଦେଖିଲି କେବଳ ମାତ୍ର

ସେ ବକୁଳ ତରୁ ଦୋଳାଇ ପତର କର
ଡାକୁଛନ୍ତି ଦୂରୁଁ, ଆସ ଆସ ଭକ୍ତଗଣ ।
ବସି ଛାୟାତଳେ, ଶୁଣାଅ ହେ ଥରେ ମୋତେ
ହରି ନାମାମୃତ, ଶୁଣୁଥିଲି ଯେତ ମୁହିଁ
ତିନିଲକ୍ଷ ନାମ, ଠାକୁର ଶ୍ରୀ ହରିଦାସ
ମଧୁମୟ କଣ୍ଠୁଁ, ଥିଲା ସେହି ମୋ ଆହାର,
ବର୍ତ୍ତମାନ ଶୁଷ୍କତନୁ, ନ ଶୁଣି ସେ ନାମ ।
କଲି ତାହାଙ୍କୁ ପ୍ରଣାମ, କୁଣ୍ଢାଇଲି ଡାଳ
କରିବାକୁ ମୋର ତପ୍ତ ପରାଣ ଶୀତଳ ।
ଭାଳିଲି ନୁହନ୍ତି ଏ ତ ସାଧାରଣ ତରୁ
ପ୍ରଗାଢ଼ କୃଷ୍ଣ ପ୍ରେମର ଜୀବନ୍ତ ମୂରତି ।
ତହୁଁ ଗଲି ସିନ୍ଧୁ ପାଶ, ଭାଳି ଆସିଥିବେ,
ଅନ୍ତରଙ୍ଗଗଣ ସଙ୍ଗେ, ସିନ୍ଧୁ ତୀରେ ବସି
ଉଚ୍ଛ୍ୱଣୀ ନାଗୀ ପରି ଉଚ୍ଛ୍ୱ କାତରେ
ବ୍ୟକ୍ତ କରୁଥିବେ ନିଜ ଦୁରନ୍ତ ବେଦନା ।
ଦେଖିଣ ଫେନିଳ ନୀଳ ଅପାର ବାରିଧି
ପଡ଼ୁଥିବ ପ୍ରାଣକାନ୍ତ ଛବି ତାଙ୍କ ମନେ,
ଫୁଲହାରେ ସୁଶୋଭିତ ସୁବିସ୍ତୀର୍ଣ୍ଣ ଛାତି,
ଅରକ୍ତିମ ରବିକର ଅସ୍ତକାଳେ ପଡ଼ି
କରାଉଥିବ ଦ୍ୱିଗୁଣ ଅଧର ସୁଷମା;
ପୂର୍ବ ଗଗନରେ ପୁଣି ନୀଳ ନୀରଦରେ
ଦେଖି ସେ କାଳରେ ଇନ୍ଦ୍ରଧନୁ ଚାରୁ ଶୋଭା
ବହି ଯାଉଥିବ ପ୍ରେମଧାର ନୟନରୁ ।
ତାହାଙ୍କୁ ଅଧୀର ଦେଖି ସ୍ୱରୂପ ଗୋସାଇଁ
ଗାଉଥିବେ ସୁମଧୁରେ ଗୀତ ମନ ଜାଣି,

ଜଣଙ୍କେ ଶ୍ରୀକୃଷ୍ଣ ପ୍ରେମ...

ରାମାନନ୍ଦ ସୁମଧୁରେ ଶ୍ଳୋକାବୃତ୍ତି କରି,
କରୁଥିବେ ତ୍ରିସ୍ୱାମୀ ହୃଦୟ ସାନ୍ତ୍ୱନା ।
କିନ୍ତୁ ଏତେ ଆଶା ମୋର ହୋଇଲା ବଞ୍ଚନ,
ଶୁଣିଲି କେବଳ ସିନ୍ଧୁ ଜଳ ଆର୍ତ୍ତନାଦ ।

"ହା ଗୌରାଙ୍ଗ କୃପାନିଧି ରସିକଶେଖର
ଦେଖୁ ନାହିଁ କି ସ୍ୱାମୀ ତୁ ମୋ ଜଳ ମଧ୍ୟରେ
ଶ୍ରୀକୃଷ୍ଣ ବିରହେ ଉନ୍ମାଦିନୀ ପରି ହୋଇ ?
ଅଛି କି ଲଭିବ ନାହିଁ ତୋତେ ଆଲିଙ୍ଗନ
ସ୍ପର୍ଶି ତୋର ଅପାଦମସ୍ତକ ପ୍ରେମଭରେ ?"

ସେ ହାହା ହୁତାଶ ବାଣୀ ଶୁଣି ସିନ୍ଧୁ ଠାରୁ
ନିବେଶେ ଚଳିଲି ମୂର୍ଚ୍ଛି ସମାଧି ମନ୍ଦିରେ,
ଥିବେ ବା ସେଠାରେ ପ୍ରଭୁ ହରିଦାସ ସଙ୍ଗେ
ନିଭୃତରେ ନାମରସ ଆସ୍ୱାଦନ କରି ;
ଝରି ବହି ଯାଉଥିବ ନୟନରୁ ବାରି ।

ଦେଖିଲି ସମାଧି ସ୍ଥିର ନିଶ୍ଚଳ ନିସ୍ପନ୍ଦ
ଯଥା ଯୋଗୀଏ ରହନ୍ତି ସମାଧି ଲଭିବେ ।
ରହିଛନ୍ତି ତନ୍ମୂର୍ତ୍ତି ଶ୍ରୀ ବିଗ୍ରହ ଅଗ୍ରେ,
ସେମାନେବି ସେହିପରି ସମାଧିରେ ରତ,
କେହି ନ କହିଲେ ମୋତେ ଯଦି ପଦେ କଥା ।

ଭାବିଲି ମୋ କର୍ମଦୋଷେ ହେଲା କି ଏମନ୍ତ
ବିରହ ପାଳକି ଗଲେ ସ୍ୱରୂପ ଲୁଚାଇ ।
ତହୁଁ ଗଲି ବାଲିପଥେ ଗଲି ଗୋପୀନାଥେ,
ସେଠାରେ ବା ଥିବେ ପ୍ରଭୁ ଗଦାଧର ସଙ୍ଗେ,
କହୁଥିବେ ସୁମଧୁରେ ନାନା ନର୍ମ କଥା,

ମୃଦୁ ମୃଦୁ ହସି ଅପାଙ୍ଗରେ ଚାହିଁ ଚାହିଁ
ନିଜ କାନ୍ତା ରାଧାରୂପୀ ଗଦାଧର ମୁଖ ।

କିନ୍ତୁ ସେ ଆଶା କି ମୋର ହୋଇଲା ସଫଳ,
କେବଳ ଦେଖିଲି ଗୋପୀନାଥ ସ୍ବରୂପ ଅଙ୍ଗ,
ବସିଛନ୍ତି ତା ଧ୍ୟାନରେ କାନ୍ତାରୂପ ଭକ୍ତ ।

ଦେଖିଲି ଧବଳକାନ୍ତି କୃଷ୍ଣ ବଡ଼ ଭାଇ
ନିଜ ପତ୍ନୀ ସଙ୍ଗେ ସେଠି ହୋଇଛନ୍ତି ଛିଡ଼ା;
କାଦମ୍ବରୀ ପାନେ ଢଳ ଢଳ ତାଙ୍କ ଆଖି
ଈଷତ୍ ରକ୍ତିମ ବର୍ଣ୍ଣ କରିଛି ଧାରଣ ।

ଜାଣିଲି ଏ ମାଧବଙ୍କର ଅଛନ୍ତି ବଶ୍ୱେର,
ନ କହିବେ ଏ ପାଜିକୁ ପଦେ ଅର୍ଥ କଥା ।

ତହୁଁ ନିରାଶେ ଫେରିଲି ମୁହିଁ ଖୋଜି ଖୋଜି
କାହିଁ ସାର୍ବଭୌମ ବାଡ଼ ପଚାରି ପଚାରି,
କେହି ଦୟାକରି ଦେଖାଇଲେ ମଠ ଏକ,
"ଏହି ଗଙ୍ଗାମାତା ମଠ ସାର୍ବଭୌମ ବାଡ଼"
ସେଠାରେ ବା ଥିଲେ ପ୍ରଭୁ ସାର୍ବଭୌମ ସଙ୍ଗେ
ଦେଖାଇ ପାଣ୍ଡିତ୍ୟ ପଶି ଶାସ୍ତ୍ରାର୍ଥ ବଖାଣେ ।

ନୀରବ ଦେଖିଲି ମଠ, ବୈଷ୍ଣବ କେବଳ
କରୁଛନ୍ତି ମନ୍ତ୍ର ଜପ ଦୂରାଠାରେ ବସି ।
ତହୁଁ ସେ ନିରାଶ ହୋଇ ବଡ଼ ଦେଉଳରେ,
ପ୍ରବେଶିଲି ଖୋଜିବାକୁ ନରହରିନାଥେ ।

ଖୋଜିଲି ବେଢ଼ା ମଧ୍ୟରେ ତନ୍ନ ତନ୍ନ କରି,
ଗରୁଡ଼ ପଛରେ ପୁଣି ଖୋଜିଲି ମୁଁ ଯାଇଁ,
ନନ୍ଦନକର ଦେଖିଥିବେ ପ୍ରାଣକାନ୍ତ ମୁଖ,

କହୁଥିବେ ଇଙ୍ଗିତରେ ତାଙ୍କ ସଙ୍ଗେ କଥା,
କରି ଅନିମିଷେ ପାନ ବଦନ ସୁଷମା ।
ମୋର ଭାଗ୍ୟଦୋଷ ତହିଁ ନ ହେଲା ଦର୍ଶନ,
ଫେରନ୍ତେ ଉତ୍ତର ପାର୍ଶ୍ୱେ ଦେଖିଲି ବେଢାରେ
ରହିଛନ୍ତି ପୁଷ୍କରିଣୀ ଦୁଇ ପଦ ଚାପି;
ଭକତଗଣ ସମ୍ଭ୍ରମ ଚେତକ ମାତ୍ର
ରଖି ଯାଇଛନ୍ତି ଯହିଁ ପ୍ରଭୁ କୃପାକର ।
ବନ୍ଦନ ସ୍ତୁତି ବିନତି କରି ସେ ଚିହ୍ନଙ୍କୁ
ଗମିଲି କାନନ ତଟେ ନରେନ୍ଦ୍ରର ତୀରେ;
ନ ଦେଖିଲି ସେ ଜଳରେ ମହାପ୍ରଭୁ ଖେଳା,
ଯେଣୁ ଅପ୍ରକଟ ଜଳେ ସନ୍ତରଣ ଲୀଳା ।

ଶ୍ରୀ ଜଗନ୍ନାଥ ବଲ୍ଲଭ ଉଦ୍ୟାନେ ପଶିଲି,
ପ୍ରତି ତରୁ ବଲ୍ଲରୀକୁ ଯେତେ ମୁଁ ପୁଛିଲି,
କେହି କୃପାକରି ମୋତେ ନ ଦେଲେ ସନ୍ଧାନ,
ନ ପାଇଲି ଦେଖି ଗୌର ଚନ୍ଦ୍ରମାବଦନ ।
ତେଣୁ ଭାବିଲି ମୁଁ ମନେ, ଦେଖିବି କେମନ୍ତେ
ମହାପ୍ରଭୁ ନିତ୍ୟଲୀଳା ଅବ୍ୟକ୍ତ ପ୍ରାକୃତେ ।
କରିନାହିଁ ଗୁରୁ ସେବା ମୁଁ ତ ପ୍ରକୃଷ୍ଟରେ;
ଅକପଟେ ସେବିନାହିଁ ବୈଷ୍ଣବପଦ୍ମରେ;
ପାଇନାହିଁ ସାଧୁକୃପା ମୁଁ ତ କପଟରେ,
ଦଶିତେ କି ଯେ ଦେଖିବ ଏ ଜଡ଼ ଚକ୍ଷୁରେ ।
ତହୁଁ ଗମ୍ଭୀରକୁ ଫେରି, ପଡ଼ିଲି କାତରେ
ଶ୍ରୀ ଗମ୍ଭୀରାଥିବାର ଗମ୍ଭୀର ଦୁଆରେ;
ମନେ ମନେ ବନ୍ଧା କମଣ୍ଡଳୁ ଧ୍ୟାନ କରି,
ବହିଗଲା ମୋ ନୟନୁଁ କେତେ ଅଶ୍ରୁ ବାରି,

ଲକ୍ଷିଲ ତୁମ୍ଭେ ଦୁହେଁ ତ ଶ୍ରୀ ଅଙ୍ଗ ସ୍ମରଣ,
କରି ଲଭଅଛ ଅଙ୍ଗେ ଶକତି ବିଶେଷ,
ଭକ୍ତ ଶକ୍ତି କହେନ୍ତି ତୁମ୍ଭଠି ସଞ୍ଚାର;
ଏ ଅଧମ ପାମରକୁ କରୁଣା ବିସ୍ତାର,
ଦେଖାଅ ଗୌର ଚରଣ ନାହିଁ ମୁଁ ନିବିଡ
ନିଜ ପରିକର ସଙ୍ଗେ ଯହିଁ ନାଚୁଛନ୍ତି ।
କାହିଁକାହିଁ କେଣୁ କହି ନ ପାଇ ଉତ୍ତର;
ରହିଅଛି କୃପାପ୍ରତି ହୋଇ ଅତାଭର ।



ଏ ପ୍ରବନ୍ଧଟିର ବିଷୟ କିଛି ଲେଖିବା ପୂର୍ବରୁ "ଉତ୍କଳ" ଓ "ଶ୍ରୀକୃଷ୍ଣ ଚୈତନ୍ୟ" ଏହି ଶୀର୍ଷ ପଦ ଦୁଇଟିର କିଞ୍ଚିତ ବ୍ୟାଖ୍ୟା ଆବଶ୍ୟକ; ଉତ୍କଳ ମାନେ ବର୍ତ୍ତମାନ ଓଡ଼ିଶା ତାହା ମୁଁ ମନେ କରୁନାହିଁ; ଉତ୍କଳର ତତ୍କାଳୀନ ଅଧୀଶ୍ୱର ଶ୍ରୀ ପ୍ରତାପରୁଦ୍ରଙ୍କ ଅଧୀନରେ ଥିବା ବିସ୍ତୃତ ଉତ୍କଳ ରାଜ୍ୟ ଯାହାର ଉତ୍ତରରେ ବର୍ତ୍ତମାନ ବଙ୍ଗଦେଶାନ୍ତର୍ଗତ ଗଙ୍ଗାନଦୀ ନିକଟବର୍ତ୍ତୀ ମୁକୁନ୍ଦ ଦେବଙ୍କଘାଟରୁ ଦକ୍ଷିଣରେ କର୍ଣ୍ଣାଟ ଅର୍ଥାତ୍ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା ସେହି ଉତ୍କଳ ମୋର ଲକ୍ଷ୍ୟ ଏବଂ 'ଶ୍ରୀକୃଷ୍ଣ ଚୈତନ୍ୟ' ପଦର ମାନେ ଏହି ଯେ ସେ ଜଗତଜନଙ୍କୁ ଶ୍ରୀକୃଷ୍ଣନାମ ଦାନ ପୂର୍ବକ ସେମାନଙ୍କର ଚୈତନ୍ୟ ସମ୍ପାଦନ କରିଥିଲେ । ତେଣୁ ତାଙ୍କର ସନ୍ନ୍ୟାସ ଗ୍ରହଣ କାଳରେ ତାହାଙ୍କର ଶ୍ରୀ ଗୁରୁଦେବ ଶ୍ରୀଲ କେଶବଭାରତୀ ସେହି ନାମ ରଖନ୍ତି, ଶ୍ରୀକୃଷ୍ଣ ଏହି ପଦଟିର ମୁଖ୍ୟ ଅର୍ଥ ରସିକଶେଖର ଶ୍ରୀ ଯଶୋଦା ନନ୍ଦନ ଶ୍ୟାମସୁନ୍ଦର, ଶ୍ରୀମାନ ବିଷ୍ଣୁଭକ୍ତ ଯେତେବେଳେ ବିଦ୍ୟାଗର୍ବରେ ଗର୍ବିତ ହୋଇ ଶ୍ରୀ ପୁରୁଷୋତ୍ତମରେ ମହାପ୍ରଭୁଙ୍କୁ ଶ୍ରୀକୃଷ୍ଣ ନାମରେ ବହୁ ଅର୍ଥ ବ୍ୟାଖ୍ୟା ଶୁଣାଇବାକୁ ଇଚ୍ଛା କଲେ, ସେତେବେଳେ ସର୍ବ ଶାସ୍ତ୍ରବିଶାରଦ ମହାପ୍ରଭୁ ତାଙ୍କୁ କହିଥିଲେ :—

ପ୍ରଭୁ କହେ- କୃଷ୍ଣ ନାମେର ବହୁଅର୍ଥ ନାମାନ
ଶ୍ୟାମସୁନ୍ଦର ଯଶୋଦାନନ୍ଦନ ଏଇମାତ୍ର ଜାନ
ତମାଲ ଶ୍ୟାମଲ ତ୍ୱିଷି ଶ୍ରୀ ଯଶୋଦାସ୍ତନନ୍ଧୟେ ।
କୃଷ୍ଣନାମ୍ନୋ ରୂଢ଼ିରିତି ସର୍ବଶାସ୍ତ୍ର ବିନିର୍ଣ୍ଣୟଃ ।

ଅତଏବ ରୂଢ଼ିବୃତ୍ତିଦ୍ୱାରା ଶ୍ରୀକୃଷ୍ଣ ଶବ୍ଦ ଶ୍ରୀ ଯଶୋଦାନନ୍ଦନଙ୍କୁହିଁ ବୁଝାଏ । ଏହାଦ୍ୱାରା ତାହାଙ୍କର ଅପର ମୂର୍ତ୍ତି ଶ୍ରୀ ଦେବକୀନନ୍ଦନ ବାସୁଦେବଙ୍କୁ ବାଦ୍ ଦିଆ ହୋଇଅଛି । ଅର୍ଥାତ୍ ବ୍ରଜବନ। ଅନ୍ୟତ୍ର ମଥୁରା, ଦ୍ୱାରକା କିମ୍ବା ବୈକୁଣ୍ଠରେ ଶ୍ରୀକୃଷ୍ଣଙ୍କର ପୂର୍ଣ୍ଣତମ ଐଶ୍ୱର୍ଯ୍ୟ ଓ ପୂର୍ଣ୍ଣତମ ମାଧୁର୍ଯ୍ୟ ପ୍ରକାଶ ପାଇନାହିଁ । ବର୍ତ୍ତମାନ ଶ୍ରୀକୃଷ୍ଣଚୈତନ୍ୟ ଶବ୍ଦର ମାନେ ସେ ସ୍ୱୟଂଭଗବାନ ଭଗବତ ହୋଇ ଶ୍ରୀକୃଷ୍ଣଙ୍କର ପୂର୍ଣ୍ଣତମ ମାଧୁର୍ଯ୍ୟ ନିଜ ପ୍ରଳାପାଦି ଆଚରଣ ଦ୍ୱାରା ଓ ନିଜ ଅନ୍ତରଙ୍ଗ ପରିକରଙ୍କ ଠାରେ ସମ୍ୟକ କୀର୍ତ୍ତନଦ୍ୱାରା ପ୍ରକୃଷ୍ଟରୂପେ ପ୍ରଦର୍ଶନ କରିଅଛନ୍ତି ଓ ଗୁପ୍ତ ଧନକୁ ବାହାର କରି ଅକାତରରେ ଜନସାଧାରଣରେ ବିତରଣ କରି ଅଛନ୍ତି, ଏବଂ ସେହି ମହାବଦାନ୍ୟତା କାର୍ଯ୍ୟଦ୍ୱାରା ମାୟାମୁଗ୍ଧ ଜୀବମାନଙ୍କର ଚୈତନ୍ୟ ସମ୍ପାଦନ କରି ଅଛନ୍ତି ଏବଂ ଏହିରୂପେ ସେ ନିଜର ଶ୍ରୀକୃଷ୍ଣ-ଚୈତନ୍ୟ ନାମ ସାର୍ଥକ କରି ଅଛନ୍ତି, ସେହି ନାମ ଧାରଣ ସଙ୍ଗେ ସଙ୍ଗେ ସେ ଶ୍ରୀପୁରୁଷୋତ୍ତମ ଧାମକୁ ଆସି ସେହି ସ୍ଥାନକୁ ପ୍ରେମ ପ୍ରଚାରର କେନ୍ଦ୍ର କରିଥିବାରୁ ଓ ତାଙ୍କ ପ୍ରକଟ କାଳର ଶେଷ ଅର୍ଦ୍ଧ ( ୨୪ ବର୍ଷ ) ଏହି ଉତ୍କଳରେ ଅତିବାହିତ କରିଥିବାରୁ ମୁଁ ଏ ପୁସ୍ତକର ନାମ "ଉତ୍କଳେ ଶ୍ରୀକୃଷ୍ଣ ଚୈତନ୍ୟ" ରଖିଲି ।

ସ୍ୱୟଂ ଶ୍ରୀକୃଷ୍ଣଚୈତନ୍ୟ ବଙ୍ଗଦେଶର, ନବଦ୍ୱୀପନାମା ତତ୍କାଳୀନ ପ୍ରସିଦ୍ଧ ନଗରରେ ଶ୍ରୀ ଶ୍ରୀଜଗନ୍ନାଥ ମିଶ୍ରଙ୍କ ପୁତ୍ରରୂପେ ୧୪୦୭ ଶକାବ୍ଦାର ଅର୍ଥାତ୍ ୧୪୮୬ ଖ୍ରୀଷ୍ଟାବ୍ଦରେ ଆବିର୍ଭୂତ ହୋଇ ୨୪ ବର୍ଷ ବୟଃକ୍ରମ ସମୟରେ କାଟୋୟା ନାମକ ସ୍ଥାନରେ ସନ୍ନ୍ୟାସ ଗ୍ରହଣ କଲେ । ତେତେବେଳେ ସେ

ଶ୍ରୀବୃନ୍ଦାବନକୁ ଯିବାର ଇଚ୍ଛା ଦେଖାଇ ଥିଲେ । କିନ୍ତୁ ତାହାଙ୍କର ବିରହରେ ମୃତପ୍ରାୟ ଦଶାପ୍ରାପ୍ତ ତାହାଙ୍କର ଅସ୍ତୀନ୍ଦ୍ରବର୍ଗଙ୍କ ହିତପାଇଁ ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ପ୍ରେମବିହ୍ୱଳ ମହାପ୍ରଭୁଙ୍କୁ ଭୁଲାଇ ଶାନ୍ତିପୁରକୁ ନେଇ ଆସିଲେ, ଏବଂ ତାହାଙ୍କର ଜନନୀ ଶଚୀଦେବୀଙ୍କୁ ନବଦ୍ୱୀପରୁ ଶାନ୍ତିପୁରକୁ ଆଣି ତାହାଙ୍କ ସହିତ ମିଳିତ କରାଇ ଥିଲେ । ଶାନ୍ତିପୁରରେ ଅବସ୍ଥାନ କାଳରେ ସମସ୍ତ ଭକ୍ତମାନେ ତାହାଙ୍କୁ ସନ୍ନ୍ୟାସ-ରୂପେ ଶ୍ରୀ ନବଦ୍ୱୀପରେ ରହିବାକୁ ଅନୁରୋଧ କଲେ । ସେଥିରେ ସେ କହିଲେ, ମୋ'ର କିଛି ସ୍ୱାତନ୍ତ୍ର୍ୟ ନାହିଁ, ଜନନୀ ଯାହା କହିବେ ସେହି ଆଦେଶ ମୋ'ର ଶିରୋଧାର୍ଯ୍ୟ । ସମସ୍ତେ ମନେ କଲେ, ମାତା କି ଏଭଳି ପୁତ୍ରଙ୍କୁ ଦେଶାନ୍ତର କରାଇବେ । ଅବଶ୍ୟ ନବଦ୍ୱୀପରେ ବାସ କରିବାର ଆଦେଶ ଦେବେ । ଏହା ମନେ କରି ମହାପ୍ରଭୁଙ୍କ ପ୍ରସ୍ତାବଟି ଅନୁମୋଦନ-ପୂର୍ବକ ସକଳେ ଯାଇ ଶଚୀମାତାଙ୍କୁ ଉକ୍ତ ବିଷୟ ନିବେଦନ କଲେ । ତହିଁରେ ଶ୍ରୀମତୀ ଶଚୀଦେବୀ କହିଲେ, 'ନିମାଇ ନବଦ୍ୱୀପରେ ରହୁ, ଏହାତ ଆମ୍ଭ ସମସ୍ତଙ୍କର ଇଚ୍ଛା, କିନ୍ତୁ ଜନସାଧାରଣ ଯେ ସେଥିରେ ନିମାଇଙ୍କୁ ନିନ୍ଦା କରିବେ, ଜନନୀ ହୋଇ ମୁଁ ସେ ନିନ୍ଦା ଶୁଣିବି କିପରି । ଅତଏବ ସେ ଶ୍ରୀପୁରୁଷୋତ୍ତମରେ ବାସ କରୁ । ତୁମ୍ଭେମାନେ ଅନେକ ସମୟରେ ସେଠାକୁ ଯାଇ ତାହାଙ୍କୁ ଦେଖି ଆସି ମୋଠାରେ କହି ପାରିବ ଏବଂ ସେ ମଧ୍ୟ ସମୟେ ସମୟେ ଗଙ୍ଗାସ୍ନାନ ନିମନ୍ତେ ଏ ଦେଶକୁ ଆସିପାରେ । ଅତଏବ ଶ୍ରୀପୁରୁଷୋତ୍ତମରେ ରହିବା ମୁଁ ଉତ୍ତମ ବିବେଚନା କରେଁ । ମାତାଙ୍କର କଥା ଉପରେ ଆଉ କିଏ କି କହିପାରେ, ଅତଏବ ତାହାହିଁ ସମସ୍ତଙ୍କର ଅନୁମୋଦିତ ହେଲା । ଅତଏବ ଜଗତଜନନୀ ଶ୍ରୀମତୀ ଶଚୀଦେବୀଙ୍କ ଶ୍ରୀମୁଖନିଃସୃତ ସେହି ଅମୃତମଧୁବାକ୍ୟ ଉତ୍କଳର ଭାବୀ ମହାସୌଭାଗ୍ୟ ସୂଚନା କରିଦେଲା ।



ଶ୍ରୀମନ୍ ମହାପ୍ରଭୁ, ଶ୍ରୀମତ୍ ନିତ୍ୟାନନ୍ଦ, ଜଗଦାନନ୍ଦ, ଶ୍ରୀ ବ୍ରହ୍ମାନନ୍ଦ, ପଣ୍ଡିତ ଶ୍ରୀଦାମୋଦର ଓ ଶ୍ରୀମୁକୁନ୍ଦ [illegible] ଠାରୁ ଶ୍ରୀପୁରୁଷୋତ୍ତମାଭିମୁଖେ ଯାତ୍ରା କଲେ । ଦଣ୍ଡଭଙ୍ଗା ନଦୀ ତୀରରେ ମହାପ୍ରଭୁ କପୋତେଶ୍ୱର ଦର୍ଶନକୁ ଯାଇଥିଲେ, ଶ୍ରୀମନ୍ ନିତ୍ୟାନନ୍ଦପ୍ରଭୁ ମହାପ୍ରଭୁଙ୍କ ଛେଦିତ ହୋଇଥିବା ଦଣ୍ଡକୁ ଭଗ୍ନକରି ନଦୀରେ ଭସାଇ ଦେଲେ । ମହାପ୍ରଭୁ ଫେରି ଆସି ଦଣ୍ଡଭଗ୍ନ ହୋଇଥିବାର ଶୁଣି କୃତ୍ରିମ କ୍ରୋଧ ପ୍ରକାଶପୂର୍ବକ କହିଲେ, ତୁମ୍ଭମାନଙ୍କ ସଙ୍ଗ ମୋର ଆବଶ୍ୟକ ନାହିଁ । ତୁମ୍ଭେମାନେ ଆଗରେ ଚାଲ, ମୁଁ ପଛରେ ଯିବି, କିମ୍ବା ମୁଁ ଆଗେ ଯାଉଛି, ତୁମ୍ଭେମାନେ ପଛରେ ଯିବ । ଶ୍ରୀ ମୁକୁନ୍ଦ ମହାପ୍ରଭୁଙ୍କର ଏକାକୀ ଯିବାର କିଛି ଗୂଢ଼ ଉଦ୍ଦେଶ୍ୟ ଅଛି, ଏହା ବୁଝିପାରି କହିଲେ ହେଉ । ଆପଣ ଆଗେ ଚାଲନ୍ତୁ ଆମ୍ଭେମାନେ ନିତ୍ୟକୃତ୍ୟ ସାରି ପଛେ ଯିବା । ଏହାପରେ ମହାପ୍ରଭୁ ଏକାକୀ ଯାଇ ଶ୍ରୀ ଜଗନ୍ନାଥଦେବଙ୍କ ଦେଉଳରେ ପ୍ରବେଶ କରି ଉତ୍କଣ୍ଠାରେ ଶ୍ରୀ ଜଗନ୍ନାଥଦେବଙ୍କୁ ଆଲିଙ୍ଗନ କରିବାକୁ ଦଉଡ଼ିଲେ ଓ ଯାଉଁ ଯାଉଁ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ସେତେବେଳେ ପଣ୍ଡିତପ୍ରବର ଶ୍ରୀସାର୍ବଭୌମ ଭଟ୍ଟାଚାର୍ଯ୍ୟ ସେଠାରେ ଉପସ୍ଥିତ ଥିଲେ । ସେ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ଅଷ୍ଟ ସାତ୍ତ୍ୱିକଭାବ ମୂର୍ତ୍ତିମାନଙ୍କରେ ପ୍ରକାଶ ପାଉଥିବାର ଦେଖି ।, ମନୁଷ୍ୟ ଦେହରେ ଏତେ ଦୂର ଅଧିରୂଢ଼ ମହାଭାବ ପ୍ରକାଶ ଅତି ଆଶ୍ଚର୍ଯ୍ୟଜନକ, ଏହା ମନେ କରି ମହାପ୍ରଭୁଙ୍କର ଶୀଘ୍ର ମୂର୍ଚ୍ଛା ଭଙ୍ଗ ନ ହେବାରୁ ଓ ଏଣେ ଶ୍ରୀଜଗନ୍ନାଥଦେବଙ୍କ ସେବାରେ ବାଧା ପଡ଼ିବାରୁ ଲୋକଦ୍ୱାରା ମହାପ୍ରଭୁଙ୍କୁ ନିଜ ମନ୍ଦିରକୁ ବୁହାଇ ନେଲେ । ବହୁକ୍ଷଣ ପର୍ଯ୍ୟନ୍ତ ମହାପ୍ରଭୁଙ୍କର ଚେତନା ଆସିଲା ନାହିଁ । ଏଥିମଧ୍ୟରେ ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୃତି ମହାପ୍ରଭୁଙ୍କ ସଙ୍ଗୀମାନେ ବଡ଼ଦେଉଳ ନିକଟ ଆସି ଶୁଣିଲେ ଏକ ନୂତନ ସନ୍ନ୍ୟାସୀ ଦେଉଳମଧ୍ୟରେ ମୂର୍ଚ୍ଛିତ ହୋଇ ପଡ଼ିଥିଲେ ଓ ସାର୍ବଭୌମ ତାହାଙ୍କୁ ନିଜ ମନ୍ଦିରକୁ ନେଇ ଯାଇ ଅଛନ୍ତି । ସେମାନେ ଏ ନିଶ୍ଚୟ ମହାପ୍ରଭୁଙ୍କର କାର୍ଯ୍ୟ, ଏହା ବୁଝିପାରି ସାର୍ବଭୌମଙ୍କ

ମନ୍ଦିରକୁ ଗମନ କଲେ ଏବଂ ସେଠାରେ ମୂର୍ଚ୍ଛିତ ଅବସ୍ଥାରେ ମହାପ୍ରଭୁଙ୍କୁ ଦେଖିଲେ । ସାର୍ବଭୌମ ସତ୍କାରପୂର୍ବକ ଏ ସମସ୍ତଙ୍କୁ ଆପଣା ଭବନରେ ରଖାଇଲେ ଓ କିଛିକ୍ଷଣ ପରେ ମହାପ୍ରଭୁଙ୍କର ଚେତନା ଆସିଲା ।

ଏଠାରେ ଏ ସାର୍ବଭୌମଙ୍କର କିଛି ପରିଚୟ ଦେବା ଆବଶ୍ୟକ । ସେ ମହା ନୈୟାୟିକ ପଣ୍ଡିତ ଥିଲେ, ଏମନ୍ତ କି ମିଥିଳାର ପଣ୍ଡିତମାନେ ଶିଷ୍ୟମାନଙ୍କୁ ନ୍ୟାୟଶାସ୍ତ୍ର ଲେଖି ଅଧ୍ୟୟନ କରିବାକୁ ଦେଉ ନ ଥିବାରୁ ସେ ସମସ୍ତ ନ୍ୟାୟଶାସ୍ତ୍ର କଣ୍ଠସ୍ଥ କରି ନିଜସ୍ଥାନ, ଶ୍ରୀ ନବଦ୍ୱୀପରେ ତାହା ଲେଖାଇ ପ୍ରଚାର କରାଇଥିଲେ । ତାହାଙ୍କର ଏହି ସମସ୍ତ ସୁଖ୍ୟାତି ଶ୍ରବଣ କରି ଉତ୍କଳର ତଦାନୀନ୍ତନ ମହାରାଜା ଶ୍ରୀପ୍ରତାପରୁଦ୍ରଦେବ ତାହାଙ୍କୁ ନିଜ ରାଜ୍ୟକୁ ଆଣି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ରଖାଇଥିଲେ । ବର୍ତ୍ତମାନ ପ୍ରସିଦ୍ଧ ଶ୍ରୀଗଙ୍ଗାମାତାମଠ ତାହାଙ୍କର ବାସଗୃହ ଥିଲା ।

ପୁରୀରେ ପ୍ରବେଶ ମାତ୍ର ମହାପ୍ରଭୁ ସେହି ସାର୍ବଭୌମଙ୍କ ସଙ୍ଗ ପାଇଲେ । ଏତତ୍‌କାଳ ଭଗବାନଙ୍କର ଏମସ୍ତ ଲୀଳାର୍ଥ ଚରିତ । ସେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ, ଏଥର ରାଧାଭାବ ସମ୍ୟକ ଆସ୍ୱାଦନ ପାଇଁ ରାଧାଭାବ ଓ କାନ୍ତି ଧାରଣପୂର୍ବକ ଗୌରାଙ୍ଗରୂପେ ଅବତୀର୍ଣ୍ଣ ହୋଇଅଛନ୍ତି । ତାହାଙ୍କର ମୁଖ୍ୟ ଉଦ୍ଦେଶ୍ୟ ରାଧାଭାବ ଆସ୍ୱାଦନ ଓ ଗୌଣ ଉଦ୍ଦେଶ୍ୟ ନାମ ପ୍ରେମ ପ୍ରଚାର । ଯଥା —

> ଶ୍ରୀରାଧାୟାଃ ପ୍ରଣୟ ମହିମା କୀଦୃଶୋ ବାନୟୈବା
> ସ୍ୱାଦ୍ୟୋ ଯେନାଦ୍ଭୁତ ମଧୁରିମା କୀଦୃଶୋ ବା ମଦୀୟଃ;
> ସୌଖ୍ୟଂ ଚାସ୍ୟା ମଦନୁଭବତଃ କୀଦୃଶଂ ବେତି ଲୋଭା
> ତ୍ତଦ୍ଭାବାଢ୍ୟଃ ସମଜନି ଶଚୀ ଗର୍ଭସିନ୍ଧୌ ହରୀନ୍ଦୁଃ ।

( ଚୈଃ ଅଧି ୧ ପରି )

୨ ମୁଖ୍ୟ ଓ ଉପୂଚର

ଅନର୍ପିତଚରୀଂ ଚିରାତ୍ କରୁଣୟାବତୀର୍ଣ୍ଣଃ କଲୌ,
ସମର୍ପୟିତୁ ମୁନ୍ନତୋଜ୍ଜ୍ୱଳରସାଂ ସ୍ୱଭକ୍ତିଶ୍ରିୟଂ
ହରିଃ ପୁରଟସୁନ୍ଦରଦ୍ୟୁତି କଦମ୍ବସନ୍ଦୀପିତଃ
ସଦା ହୃଦୟକନ୍ଦରେ ସ୍ଫୁରତୁ ବଃ ଶଚୀନନ୍ଦନଃ ।

୨ ଗୌଣ କାରଣ ।

ସ୍ମରଣମାତ୍ର ଯେ ଅପରର ଇଚ୍ଛା ପୂର୍ଣ୍ଣ କରନ୍ତି, ତାହାଙ୍କର ନିଜ ବାଞ୍ଛା କି ଅପୂର୍ଣ୍ଣ ରହନ୍ତା । ଯେତେବେଳେ ସେ ନିଜ ପ୍ରକଟ ଲୀଳାର ଶେଷ ୨୪ ବର୍ଷ ଶ୍ରୀପୁରୁଷୋତ୍ତମକୁ ଲୀଳାକ୍ଷେତ୍ର କରି ସେଠାରେ ଅତିବାହିତ କରିବେ ବୋଲି ବାଛିଅଛନ୍ତି, ସେ ସ୍ଥାନକୁ ସେହିପରି ଲୀଳାର ଉପଯୋଗୀ କରିବା ତ ଆବଶ୍ୟକ । ଶ୍ରୀଭଗବାନ ପ୍ରକଟରେ ହେଉ ବା ଅପ୍ରକଟରେ ହେଉ ଯେଉଁଠାରେ ଯେତେ ଲୀଳା କରନ୍ତୁ, ତାହାଙ୍କର ଲୀଳାର ସହାୟ ନିଜଜନ ପରିକରମାନେ ସେଠାରେ ରହି ତାହାଙ୍କ ଲୀଳା କାର୍ଯ୍ୟର ସହାୟତା କରନ୍ତି । ନିଜ ପରିକର ବ୍ୟତିରେକେ ଲୀଳାର କାର୍ଯ୍ୟ ସୁଷ୍ଠୁ ସମ୍ପାଦିତ ହୋଇ ନ ପାରେ । ଅତଏବ ପୁରୁଷୋତ୍ତମଧାମକୁ ମହାପ୍ରଭୁ ଆଗମନ ନ ଅସୁ ତାହାଙ୍କର ଏ ଲୀଳାର ପ୍ରଧାନ ସହାୟ ଶ୍ରୀ ବାସୁଦେବସାର୍ବଭୌମଭଟ୍ଟାଚାର୍ଯ୍ୟଙ୍କୁ ପ୍ରାପ୍ତ ହେଲେ ।

ମହାପଣ୍ଡିତ ହେଲେହେଁ ସାର୍ବଭୌମ ପ୍ରଥମେ ଅଦ୍ୱୈତବାଦୀ ଥିଲେ । ଅତଏବ ସେ ଏହି ନବସନ୍ନ୍ୟାସୀଙ୍କୁ ପାଇ ତାହାଙ୍କର ଅପୂର୍ବ ରୂପମାଧୁରୀ ଓ ବିନୀତ ସ୍ୱଭାବ ଦର୍ଶନ କରି ତାହାଙ୍କୁ ଅଦ୍ୱୈତ ମାର୍ଗରେ ଦୀକ୍ଷିତ କରିବା-ବାକୁ ଇଚ୍ଛା କଲେ, ଏବଂ ତଦନୁଯାୟୀ ଶାସ୍ତ୍ର ମଧ୍ୟ ଶୁଣାଇଲେ । ସାର୍ବଭୌମ ଶାସ୍ତ୍ର ପାଠ କରନ୍ତି, ତାହାର ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟା କରନ୍ତି ଓ ମହାପ୍ରଭୁ କିଛି ମାତ୍ର ଉତ୍ତର ନ ଦେଇ କେବଳ ଶୁଣୁଥାଆନ୍ତି । ଏହିପରି

ସାତଦିନ ଅତିବାହିତ ହୁଅନ୍ତେ ସାର୍ବଭୌମ ବିସ୍ମିତ ହୋଇ ପଚାରିଲେ "ଶ୍ରୀପାଦ, ଆପଣ ସାତଦିନ ହେବ ବେଦାନ୍ତ ଶ୍ରବଣ କରୁଅଛନ୍ତି କିନ୍ତୁ ବୁଝିଲେ କି ନା କିଛିମାତ୍ର କହୁ ନ ଦେଖାଯାନ୍ତି ।" ମହାପ୍ରଭୁ ବିନୟପୂର୍ବକ କହିଲେ, "ମହାତ୍ମନ୍, ବେଦାନ୍ତ ସୂତ୍ରର ଅର୍ଥ ଅତି ନିର୍ମଳ କିନ୍ତୁ ଆପଣ ଯେ ଭାଷ୍ୟଦ୍ୱାରା ବୁଝାଉ ଅଛନ୍ତି ସେଥିରେ ସୂତ୍ରର ମୁଖ୍ୟାର୍ଥ ଆଚ୍ଛାଦିତ ହୋଇ ରହୁଅଛି । ଆପଣ ଅଭିଧାବୃତ୍ତି ପରିତ୍ୟାଗପୂର୍ବକ ଲକ୍ଷଣାଦ୍ୱାରା ଗୌଣ ଅର୍ଥ କରୁଅଛନ୍ତି । ବେଦ ଏବଂ ପୁରାଣରେ ବ୍ରହ୍ମର ଅର୍ଥ ସର୍ବୈଶ୍ୱର୍ଯ୍ୟ ପରିପୂର୍ଣ୍ଣ ସଚ୍ଚିଦାନନ୍ଦବିଗ୍ରହ ସ୍ୱୟଂ ଭଗବାନ । ତାହାଙ୍କୁ ଆପଣ ନିରାକାର ବୋଲି କହୁଅଛନ୍ତି । ଯଥା—

ଷଡ଼ୈଶ୍ୱର୍ଯ୍ୟ ପୂର୍ଣ୍ଣାନନ୍ଦ ବିଗ୍ରହ ଯାହାର ।
ହେନ ଭଗବାନେ ତୁମି କହ ନିରାକାର ॥

( ଚୈଃ ଚଃ ମଧ୍ୟ ୬ । )

ଏବଂ ପୁଣି ଈଶ୍ୱର ମାୟାର ଅଧୀଶ ଏବଂ ଜୀବ ମାୟାର ବଶ । ଅତଏବ ଈଶ୍ୱର ଓ ଜୀବ ମଧ୍ୟରେ ବହୁ ପ୍ରଭେଦ ରହିଅଛି । ଆପଣ ଈଶ୍ୱର ଓ ଜୀବ ଏ ଦୁହିଙ୍କର ଏକାବେଳେ ଅଭିନ୍ନତ୍ୱ ପ୍ରତିପାଦନ କରୁଅଛନ୍ତି । ଯଥା—

ମାୟାଧୀଶ ମାୟାବଶ, ଈଶ୍ୱରେ ଜୀବେ ଭେଦ ।
ହେନ ଜୀବ ଈଶ୍ୱର ସନେ କହ ଅଭେଦ । (ଚୈଃ ମଧ୍ୟ-୬)

ପ୍ରଣବହିଁ ମହାବାକ୍ୟ ଓ ଈଶ୍ୱରଙ୍କର ମୂର୍ତ୍ତି ଓ ତତ୍ତ୍ୱମସି ପ୍ରାଦେଶିକ ବାକ୍ୟ । ଆପଣ ତତ୍ତ୍ୱମସିକୁ ମହାବାକ୍ୟ ରୂପରେ ସ୍ଥାପନ କରୁଅଛନ୍ତି । ଶ୍ରୀ ଭଗବାନ ସମ୍ବନ୍ଧ, ଭକ୍ତି ଅଭିଧେୟ ଏବଂ ପ୍ରେମହିଁ ପ୍ରୟୋଜନ । ବେଦ ଏହି ତିନିକୁ ସ୍ଥାପନ କରିଅଛନ୍ତି । ସାର୍ବଭୌମ ମହାପ୍ରଭୁଙ୍କ ଏହି ସବୁ ଯୁକ୍ତି

ଷଟ୍‌ଚୂଡ଼ରେ ନାନାତର୍କ ଉପସ୍ଥିତ କରି ମଧ୍ୟ ନିଜମତ ସ୍ଥାପନ କରିବାକୁ ସକ୍ଷମ ହେଲେ ନାହିଁ । ମହାପ୍ରଭୁ ତତ୍ପରେ ଶ୍ରୀଭଗବାନଙ୍କ ଠାରେ ଭକ୍ତି ହିଁ ପରମ ପୁରୁଷାର୍ଥ ଏବଂ ଅତ୍ମାରାମ ମୁନିଗଣ ଶ୍ରୀଭଗବାନଙ୍କର ଭଜନ କରନ୍ତି ଏହା ସ୍ଥାପନପୂର୍ବକ ଶ୍ରୀମଦ୍ ଭାଗବତରୁ ନିମ୍ନ ଶ୍ଳୋକଟି ଉଦ୍ଧୃତ କଲେ । ଯଥା :—

ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥା ଅପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତିମିତ୍ଥମ୍ଭୂତଗୁଣୋ ହରିଃ । (ଚୈ ମଧ୍ୟ-୬)

ସାର୍ବଭୌମ କହିଲେ "ଶ୍ରୀପାଦ ଏ ଶ୍ଳୋକର ଅର୍ଥ ବ୍ୟାଖ୍ୟା କରନ୍ତୁ ନା ।" ମହାପ୍ରଭୁ ଉତ୍ତର କଲେ, "ଆପଣ ଆଗେ ଏହାର ଅର୍ଥମାନ ପ୍ରକାଶ କରନ୍ତୁ, ମୁଁ ପରେ କହିବି ।" ତହୁଁ ସାର୍ବଭୌମ ନିଜର ବିଦ୍ୟାବତ୍ତା ପ୍ରକାଶପୂର୍ବକ ତର୍କଶାସ୍ତ୍ରାନୁମୋଦିତ ୯ ପ୍ରକାର ଅର୍ଥ କଲେ । ମହାପ୍ରଭୁ ସେ ସମସ୍ତ ଶୁଣି ଇଷତ୍ ହାସ୍ୟ କରି କହିଲେ, "ଭଟ୍ଟାଚାର୍ଯ୍ୟ ! ଆପଣ ସାକ୍ଷାତ୍ ବୃହସ୍ପତି, ଅନ୍ୟ କାହାର ଏରୂପ ଅର୍ଥ କରିବାର ଶକ୍ତି ନାହିଁ ; କିନ୍ତୁ ଆପଣଙ୍କର ଏ ପାଣ୍ଡିତ୍ୟପୂର୍ଣ୍ଣ ଅର୍ଥ ଛଡ଼ା ଏ ଶ୍ଳୋକର ଅନ୍ୟ ଅର୍ଥ ଅଛି ।" ଏହା କହି ତାହାଙ୍କ ୯ ଅର୍ଥରୁ ଗୋଟିଏ ମାତ୍ର ଗ୍ରହଣ ନକରି ମହାପ୍ରଭୁ ସେ ଶ୍ଳୋକର ନୂତନ ୧୮ ପ୍ରକାର ଅର୍ଥ କଲେ । ତେତେବେଳେ ସେ ଅର୍ଥମାନ ଶୁଣି ସାର୍ବଭୌମ ଅତି ଚମତ୍କୃତ ହେଲେ ଏବଂ ଭାବିଲେ ମୋର ୯ ଅର୍ଥ ଉପରେ ଅପର ଅର୍ଥ କରେ ଏହା ମନୁଷ୍ୟ ପକ୍ଷରେ ଅସମ୍ଭବ । ଅତଏବ ଏହି ଯେ ଯୁବକସନ୍ନ୍ୟାସୀଙ୍କୁ ମୁଁ ଶିକ୍ଷାଦେବି ବୋଲି ଭାବିଥିଲି ଏହା ମୋର ଅତ୍ୟନ୍ତ ଧୃଷ୍ଟତା । ଗୋପୀନାଥାଚାର୍ଯ୍ୟ ଏହାଙ୍କୁ ଶ୍ରୀ ଭଗବାନ ବୋଲି କହିବାରୁ ମୁଁ ତାହାଙ୍କୁ ହାସ୍ୟରେ ଉଡ଼ାଇ ଦେଉଥିଲି ବର୍ତ୍ତମାନ ଏହାଙ୍କର କୃପାରୁ ମୁଁ ବୁଝିପାରୁ ଅଛି । ଏ କେବେହେଁ ମନୁଷ୍ୟ ନୁହନ୍ତି, ପ୍ରକୃତରେ ଏ ସ୍ୱୟଂ ଭଗବାନ । ଏହିରୂପ ଚିନ୍ତାକରି ମହାପ୍ରଭୁଙ୍କ ଶ୍ରୀଚରଣ କମଳରେ ଦଣ୍ଡବତ ପ୍ରଣାମପୂର୍ବକ ତାହାଙ୍କ ଯଥାଯୋଗ୍ୟ

ହେଲେ । ମହାପ୍ରଭୁ ତାହାଙ୍କୁ ପ୍ରଥମେ ଚତୁର୍ଭୁଜ ମୂର୍ତ୍ତି ଦେଖାଇ ପରେ ଦ୍ୱିଭୁଜ ମୁରଲୀଧର ଶ୍ୟାମସୁନ୍ଦର ମୂର୍ତ୍ତି ଦେଖାଇଲେ । ଏହିରୂପେ ସାର୍ବଭୌମ ମହାପ୍ରଭୁଙ୍କର ଏକାନ୍ତ ଭକ୍ତ ହୋଇ ଉଠିଲେ ଓ ଦିବା ନିଶି ମହାପ୍ରଭୁଙ୍କର ଧ୍ୟାନ ଓ ତାହାଙ୍କ ନାମ କୀର୍ତ୍ତନ କରିବାକୁ ଲାଗିଲେ । ସେ ଯେ ମହାପ୍ରଭୁଙ୍କୁ କି ରୂପରେ ଚିହ୍ନିଥିଲେ, ତାହାଙ୍କର ନିମ୍ନ ଦୁଇଗୋଟି ଶ୍ଳୋକହିଁ ତାହାର ଯଥେଷ୍ଟ ପ୍ରମାଣ । ଯଥା :—

ବୈରାଗ୍ୟ ବିଦ୍ୟା ନିଜଭକ୍ତି ଯୋଗ,
ଶିକ୍ଷାର୍ଥମେକଃ ପୁରୁଷଃ ପୁରାଣଃ ।
ଶ୍ରୀକୃଷ୍ଣଚୈତନ୍ୟ ଶରୀର ଧାରୀ,
କୃପାମ୍ବୁଧିର୍ଯସ୍ତମହଂ ପ୍ରପଦ୍ୟେ ।
କାଳାନ୍ନଷ୍ଟଂ ଭକ୍ତିଯୋଗଂ ନିଜଂ ଯଃ,
ପ୍ରାଦୁଷ୍କର୍ତ୍ତୁଂ କୃଷ୍ଣଚୈତନ୍ୟ ନାମା ।
ଆବିର୍ଭୂତସ୍ତସ୍ୟ ପାଦାରବିନ୍ଦେ,
ଗାଢ଼ଂ ଗାଢ଼ଂ, ଲୀୟତାଂ ଚିତ୍ତ ଭୃଙ୍ଗଃ । (ଚୈଃ ମଧ୍ୟ-୬)

ଏବଂ ଶ୍ରୀଲ କୃଷ୍ଣଦାସ କବିରାଜ ଏହି ଶ୍ଳୋକଦ୍ୱୟ ଉଦ୍ଧୃତ ପୂର୍ବକ କହିଅଛନ୍ତି ।

ଏଇ ଦୁଇ ଶ୍ଳୋକ ଭକ୍ତ କଣ୍ଠେ ରତ୍ନହାର,
ସାର୍ବଭୌମେର କୀର୍ତ୍ତି ଘୋଷେ ଢକ୍କାବାଦ୍ୟାକାର ।
ସାର୍ବଭୌମ ହୈଲ ପ୍ରଭୁର ଭକ୍ତ ଏକତାନ,
ମହାପ୍ରଭୁ ବିନେ ସେବ୍ୟ ନାହି ଜାନେ ଆନ ।
ଶ୍ରୀକୃଷ୍ଣ ଚୈତନ୍ୟ ଶଚୀସୁତ ଗୌରଧାମ,
ଏଇ ଧ୍ୟାନ ଏଇ ଜପ ଏଇ ଲୟେ ନାମ । (ଚୈଃ ମଧ୍ୟ ୬)

ଏହା ସାର୍ବଭୌମଙ୍କୁ ଅନୁଗତ କରିବା ଦ୍ୱାରା ମହାପ୍ରଭୁଙ୍କର ନାମ ପ୍ରେମପ୍ରଚାରରୂପ କାର୍ଯ୍ୟ ଅଧିକାଂଶ ପରିମାଣରେହିଁ ସାଧିତ ହେଲା, କାରଣ

ସାର୍ବଭୌମ ଭଟ୍ଟାଚାର୍ଯ୍ୟ ମହାମେଧାବୀ ଓ ସେତେବେଳେ ସମଗ୍ର ଭାରତ-ବର୍ଷରେ ଅଦ୍ୱିତୀୟ ପଣ୍ଡିତ ଏବଂ ଉତ୍କଳାଧୀଶ ଶ୍ରୀ ପ୍ରତାପରୁଦ୍ରଙ୍କର ବହୁ-ସମ୍ମାନ ପାତ୍ର । ସମଗ୍ର ଉତ୍କଳବାସୀ ତାହାଙ୍କୁ ଅତିପୂଜ୍ୟ ବୋଲି ମନେକରୁଥିଲେ । ବଙ୍ଗ କଳିଙ୍ଗ ପ୍ରଭୃତି ଭାରତର ଅନ୍ୟାନ୍ୟ ପ୍ରଦେଶରୁ ଯେଉଁମାନେ ଶ୍ରୀ ଜଗନ୍ନାଥ ଦର୍ଶନକୁ ଆସୁଥିଲେ, ସେମାନେ ମଧ୍ୟ ସାର୍ବଭୌମଙ୍କୁ ମହା-ପଣ୍ଡିତ ଜ୍ଞାନରେ ସମ୍ମାନ କରୁଥିଲେ । ଅତଏବ ଏଭଳି ଜ୍ଞାନବାନ୍ ପଣ୍ଡିତ ଯେତେବେଳେ ନିଜ ଅଦ୍ୱୈତବାଦ ପରିତ୍ୟାଗ ପୂର୍ବକ ମହାପ୍ରଭୁଙ୍କ ମତ ଅବଲମ୍ବନ କଲେ ତେତେବେଳେ ପୁରୁଷୋତ୍ତମର ରାଜଗୁରୁ ଶ୍ରୀ କାଶୀ-ମିଶ୍ର, ବଡଦେଉଳର ଲେଖନାଧିକ ଶ୍ରୀ ଶିଖି ମାହାନ୍ତି, ଶ୍ରୀ ଜଗନ୍ନାଥ ଦେବଙ୍କ ପ୍ରଧାନ ସେବକ ଶ୍ରୀ ଜନାର୍ଦ୍ଦନ, ଶ୍ରୀ କୃଷ୍ଣଦାସ ଓ ଶ୍ରୀଦାସ ମହାସୁଆର ଏବଂ ଅଠରପର ପ୍ରସିଦ୍ଧ ବରିଷ୍ଠ ଲୋକମାନେ ଅନେକେ ସେହି ପଥରେ ପଥିକ ହେଲେ । ସେମାନଙ୍କ ଆଦର୍ଶ ଦ୍ୱାରା ମହାପ୍ରଭୁଙ୍କ ପ୍ରଚାରିତ ଧର୍ମ ଅତିଶୀଘ୍ର ଉତ୍କଳ ବ୍ୟାପିଗଲା ।

ଏଥିମଧ୍ୟରେ ମହାପ୍ରଭୁ ଦକ୍ଷିଣ ଦେଶ ଉଦ୍ଧାର ପାଇଁ ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ବାହାରିଗଲେ । ମହାରାଜ ଶ୍ରୀ ପ୍ରତାପରୁଦ୍ର ଦେବ ନିଜ ରାଜଧାନୀ କଟକରୁ ଶ୍ରୀ ପୁରୁଷୋତ୍ତମକୁ ଆସି ଶୁଣିଲେ, ଏକ ଅପୂର୍ବ ସନ୍ନ୍ୟାସୀ ରାଜପଣ୍ଡିତ ଶ୍ରୀଳ ସାର୍ବଭୌମଙ୍କୁ ଆତ୍ମସାତ୍ କରି ତାଙ୍କ ଚିର ଅଭ୍ୟସ୍ତ ଧର୍ମମତ ଛଡ଼ାଇ ନିଜ ନୂତନ ମତରେ ଦୀକ୍ଷିତ କରାଇଅଛନ୍ତି । ମହାରାଜା ଏଥିରେ ଅଶ୍ରଦ୍ଧାନ୍ୱିତ ହୋଇ ପ୍ରକୃତ ତଥ୍ୟ ବୁଝିବାପାଇଁ ସାର୍ବଭୌମଙ୍କୁ ଡକାଇ ପଚାରିଲେ, ଭଟ୍ଟାଚାର୍ଯ୍ୟେ ମୁଁ ଶୁଣୁଛି, ଏକ ମହାପୁରୁଷ ଏ ଧାମକୁ ଆସିଥିଲେ ଓ ସେ ପୁଣି ତୁମ୍ଭଙ୍କୁ ବଡ଼ କୃପାକରି ଅଛନ୍ତି ।" ସାର୍ବଭୌମ କହିଲେ, "ମହାରାଜ ! ସେ ସତ୍ୟକଥା କିନ୍ତୁ ସେତ କେବଳ ମହାପୁରୁଷ ନୁହନ୍ତି, ସେ ସ୍ୱୟଂ ଶ୍ରୀକୃଷ୍ଣ, ଅମ୍ଭମାନଙ୍କ ପରମ ସୌଭାଗ୍ୟ ହେତୁ ଏ ଧରାରେ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ।" ଭଟ୍ଟାଚାର୍ଯ୍ୟଙ୍କର

ଏହି ଏକ କଥାରେ ମହାରାଜାଙ୍କର ଯେ ମହାପୁରୁଷ ସ୍ୱୟଂ ଶ୍ରୀକୃଷ୍ଣ ଥିବାରୁ ବିଶ୍ୱାସ ଜାତହେଲା, କାରଣ ସେ ଭଟ୍ଟାଚାର୍ଯ୍ୟଙ୍କର ମହତ୍ତ୍ୱ ଉତ୍ତମରୂପେ ଉପଲବ୍ଧି କରିଥିଲେ । ଯଥା —

ରାଜା କହେ ଭଟ୍ଟ ତୁମି ବଡ଼ ଶିରୋମଣି,
ତୁମିତାରେ କୃଷ୍ଣ କହ—ତାତେ ସତ୍ୟମାନି । ( ଚୈଃ ମଧ୍ୟ ୧୦ )

ଏବଂ ମହାରାଜା କହିଲେ "ଭଟ୍ଟାଚାର୍ଯ୍ୟ ! ମୁଁ କିପରି ତାହାଙ୍କର ଦର୍ଶନ ଲାଭ କରିବି ।" ଭଟ୍ଟାଚାର୍ଯ୍ୟ କହିଲେ; ଆପଣ ମହାରାଜା, ସେ ଯେ ଆପଣଙ୍କୁ ଦର୍ଶନଦାନ କରିବାକୁ ସହଜରେ ରାଜି ହେବେ ଏହା ମୋର ବିଶ୍ୱାସ ହେଉନାହିଁ । ତେବେ ସେ ତୀର୍ଥ ଭ୍ରମଣରୁ ଫେରିଲେ, ସେ ବିଷୟରେ ଚେଷ୍ଟା କରାଯିବ ।

ଏଣେ ମହାପ୍ରଭୁ ଦକ୍ଷିଣପ୍ରଦେଶ ଭ୍ରମଣ କରିବା ସମୟରେ ଗୋଦାବରୀ ତୀରରେ ଶ୍ରୀ ଶ୍ରୀ ରାମାନନ୍ଦ ରାୟଙ୍କର ଦେଖା ପାଇଲେ । ଶ୍ରୀ ଶ୍ରୀ ରାମାନନ୍ଦ ମହାରାଜା ପ୍ରତାପରୁଦ୍ରଙ୍କର ପ୍ରଧାନ ମନ୍ତ୍ରୀ ଓ ନୂତନରାଜ୍ୟର ପ୍ରଶାସନ ପାଇଁ ମହାରାଜା ତାହାଙ୍କୁ ବିଦ୍ୟାନଗର ( ରାଜମହେନ୍ଦ୍ରି )କୁ ପଠାଇ ଥିଲେ । ମହାପ୍ରଭୁ କୃଷ୍ଣବିରହ ଉନ୍ମାଦିନୀ ଶ୍ରୀରାଧା, ରାମାନନ୍ଦ ତାହାଙ୍କର ପ୍ରିୟସଖୀ ବିଶାଖା, ଉଭୟଙ୍କର ପରସ୍ପର ମିଳନରେ ସ୍ୱାଭାବିକ ପ୍ରେମସିନ୍ଧୁ ଉଚ୍ଛୁଳି ପଡ଼ିଲା । ଗୋଦାବରୀ ତୀରରେ କତିପୟ ଦିବସ ଉଭୟଙ୍କର ଶ୍ରୀକୃଷ୍ଣକଥା ପ୍ରସଙ୍ଗରେ ଯେ ପ୍ରେମତରଙ୍ଗ ଉଚ୍ଛୁଳି ଥିଲା, ତାହା ଏକ ଅଦ୍ଭୁତ ଅଭିନବ ବ୍ୟାପାର । ତାହାର ସୁନ୍ଦର ଚିତ୍ର ଶ୍ରୀଳ କୃଷ୍ଣଦାସ କବିରାଜ ତାହାଙ୍କର ରଚିତ ଶ୍ରୀ ଚୈତନ୍ୟ ଚରିତାମୃତ ଗ୍ରନ୍ଥରାଜର ମଧ୍ୟଲୀଳା ଅଷ୍ଟମ ପରିଚ୍ଛେଦରେ ଅଙ୍କନ କରି ରଖିଅଛନ୍ତି । ସେ ଛବି ଚିର ଉଜ୍ଜ୍ୱଳହୋଇ ବିରାଜମାନ କରୁଅଛି । ଧର୍ମ ବିଷୟରେ ଏରୂପ ସୁନ୍ଦର ସିଦ୍ଧାନ୍ତ ଅନ୍ୟ କୁଆଡ଼େ ଦେଖାଯାଏ ନାହିଁ । ବଙ୍ଗର ସୁବିଖ୍ୟାତ ପଣ୍ଡିତ ଭକ୍ତ ପ୍ରବର ଶ୍ରୀ

ଶ୍ରୀ ରସିକ ମୋହନ ବିଦ୍ୟାଭୂଷଣ ତାହାଙ୍କ ରଚିତ ଶ୍ରୀ ରାୟରାମାନନ୍ଦ ନାମକ ଗ୍ରନ୍ଥରେ ସେ ଗୂଢ଼ ସିଦ୍ଧାନ୍ତ ବିଷୟର କେତେକ ଆଲୋଚନା କରି ଅଛନ୍ତି । ଏ ଅଧମ ମଧ୍ୟ ସ୍ୱରଚିତ ଶ୍ରୀ ଶ୍ରୀରାୟରାମାନନ୍ଦରେ ଉକ୍ତ ବିଷୟ ଯଥାସାମାନ୍ୟ ବର୍ଣ୍ଣ କରିଅଛି । ମହାପ୍ରଭୁ ସେଠାରେ କିଛିଦିନ ରହି ଦକ୍ଷିଣକୁ ଯିବା କାଳରେ ଶ୍ରୀ ରାମାନନ୍ଦଙ୍କୁ କହିଲେ ମୁଁ ଅଳ୍ପଦିନ ମଧ୍ୟରେ ପୁରୀକୁ ଫେରିବି, ତୁମ୍ଭେ ମଧ୍ୟ ଏ ଦାୟିତ୍ୱପୂର୍ଣ୍ଣ ବିଷୟ କାର୍ଯ୍ୟ ପରିତ୍ୟାଗ କରି ପୁରୀରେ ଯାଇ ବାସକର, ଉଭୟେ କୃଷ୍ଣ କଥା ପ୍ରସଙ୍ଗରେ ସୁଖରେ କାଳ କଟାଇବା । ଯଥା-

ବିଷୟ ଛାଡ଼ିଯା ତୁମି ଯାଇ ନୀଳାଚଳେ;
ଆମି ତୀର୍ଥ କରି ତାହାଁ ଆସିବ ଅଳ୍ପକାଳେ;
ଦୁଇଜନେ ନୀଳାଚଳେ ରହିବ ଏକସଙ୍ଗେ;
ସୁଖେ ଗୋଙାଇବ କାଲ କୃଷ୍ଣକଥା ରଙ୍ଗେ (ଚୈଃ ମଧ୍ୟ—୮ ପରି)

ତତ୍ପରେ ମହାପ୍ରଭୁ ରାମେଶ୍ୱର ପର୍ଯ୍ୟନ୍ତ ଯାଇ ସେଠାରୁ ପୁରୀକୁ ଫେରି ଆସିଲେ । ତାହାଙ୍କ ପ୍ରତ୍ୟାଗମନରେ ପୁରୀବାସୀ ଭକ୍ତଗଣ ପରମାନନ୍ଦ ଲାଭ କଲେ । ମହାପ୍ରଭୁଙ୍କ ପ୍ରେମାକର୍ଷଣରେ ତାହାଙ୍କର ଦୃଷ୍ଟିପ୍ରିୟ ସଙ୍ଗୀମାନେ ଆକୃଷ୍ଟ ହୋଇ ଏକେ ଏକେ ପୁରୀରେ ଆସି ତାହାଙ୍କ ସହିତ ମିଳିତ ହେବାକୁ ଲାଗିଲେ । ଶ୍ରୀଲ ସ୍ୱରୂପଦାମୋଦର, ଶ୍ରୀଲ ପରମାନନ୍ଦପୁରୀ, ଶ୍ରୀଲ ବ୍ରହ୍ମାନନ୍ଦଭାରତୀ, ଶ୍ରୀଲ ଗୋବିନ୍ଦଦାସ, ପ୍ରଭୃତି ମହାତ୍ମାମାନେ ମହାପ୍ରଭୁରୂପୀ ମହାସାଗରରେ ମିଳିତ ହେଲେ । ମହାପ୍ରଭୁଙ୍କର ପୁରୀ ପ୍ରତ୍ୟାଗମନ ବାର୍ତ୍ତା ଗୌଡ଼ ଦେଶରେ ପ୍ରଚାର ହୁଅନ୍ତେ ଶ୍ରୀମାନ୍ ଅଦ୍ୱୈତାଚାର୍ଯ୍ୟ ଶ୍ରୀଲ ଶ୍ରୀବାସ ପଣ୍ଡିତ, ଶ୍ରୀବକ୍ରେଶ୍ୱର ପଣ୍ଡିତ, ଶ୍ରୀ ଗଦାଧର ପଣ୍ଡିତ, ଠାକୁର ଶ୍ରୀ ହରିଦାସ ପ୍ରଭୃତି ବଙ୍ଗର ମହାପ୍ରଭୁଙ୍କ ଅନ୍ତରଙ୍ଗ ଭକ୍ତମାନେ କାଳ ବିଳମ୍ବ ନ କରି ପୁରୀକୁ ଆସି ମହାପ୍ରଭୁଙ୍କ ସଙ୍ଗେ ମିଳିତ ହେଲେ ।

ଏଣେ ମହାରାଜା ଶ୍ରୀ ପ୍ରତାପରୁଦ୍ରଙ୍କର ଉତ୍କଣ୍ଠାର ସୀମା ନାହିଁ, ସେ କିପରି ମହାପ୍ରଭୁଙ୍କ ନିକଟକୁ ଯାଇ ତାହାଙ୍କ ସଙ୍ଗେ ମିଳିତ

ହେବେ ଏ ବିଷୟ ସମାଧାନ ପାଇଁ ଶ୍ରୀ ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କୁ ଅନୁରୋଧ କଲେ । ଭଟ୍ଟାଚାର୍ଯ୍ୟ ମହାରାଜାଙ୍କର ଉତ୍କଣ୍ଠାତିଶଯ୍ୟ ଦର୍ଶନ କରି ଭୀତ ଭୀତ ଚିତ୍ତରେ ମହାପ୍ରଭୁଙ୍କୁ ଉକ୍ତ ବିଷୟ ନିବେଦନ କଲେ । ମହାପ୍ରଭୁ ତାହା ଶୁଣି ଦୁଇ କର୍ଣ୍ଣରେ ହସ୍ତ ଦେଇ ନାରାୟଣ ନାରାୟଣ ସ୍ମରଣପୂର୍ବକ କହିଲେ, "ଭଟ୍ଟାଚାର୍ଯ୍ୟ ! ଆପଣ କି କଥା କହୁଅଛନ୍ତି, ମୁଁ ବିରକ୍ତ ସନ୍ନ୍ୟାସୀ, ମୋ ପକ୍ଷରେ ସ୍ତ୍ରୀ ଦର୍ଶନ ଓ ରାଜଦର୍ଶନ ଉଚିତ କି"? ସାର୍ବଭୌମ କହିଲେ, "ମହାରାଜ ଶ୍ରୀ ଜଗନ୍ନାଥ ଦେବଙ୍କ ସେବକ ଓ ପରମ ଭକ୍ତ ।" ମହାପ୍ରଭୁ କହିଲେ ତାହା ହେଲେ ମଧ୍ୟ ରାଜାମାନେ କାଳସର୍ପ ସଦୃଶ ଯଥା :—

ପ୍ରଭୁ କହେ ତଥାପି ରାଜା କାଳସର୍ପାକାର,
କାଷ୍ଠନାରୀ ସ୍ପର୍ଶେ ଯୈଛେ ଉପଜେ ବିକାର (ଚୈଃ ମଧ—୧୧)

ଏବଂ ଆହୁରି କହିଲେ ଭଟ୍ଟାଚାର୍ଯ୍ୟ, ତୁମ୍ଭେ ଏଭଳି କଥା ଆଉ ଉତ୍ଥାପନ କଲେ ମୁଁ ପୁରୀ ଛାଡ଼ି ଅନ୍ୟତ୍ର ଚାଲିଯିବି । ଏହା ଉପରେ ସାର୍ବଭୌମ ଆଉ କିଛି କହିବାକୁ ସାହସୀ ହେଲେ ନାହିଁ । ଭଟ୍ଟାଚାର୍ଯ୍ୟ ମହାରାଜାଙ୍କଠାରେ ମହାପ୍ରଭୁଙ୍କ ରାଜମିଳନର ଅନିଚ୍ଛା ବିଷୟ ପ୍ରକାଶ କରନ୍ତେ ମହାରାଜା ବିଷାଦ ସାଗରରେ ବୁଡ଼ିଗଲେ ଏବଂ କହିଲେ, "ମହାପ୍ରଭୁ ପାପୀ ଓ ନୀଚ ବ୍ୟକ୍ତିଙ୍କୁ ଉଦ୍ଧାର ପାଇଁ ଅବତାର ଗ୍ରହଣ କରିଅଛନ୍ତି, ଜଗାଇ ମାଧାଇ ନାମା ମହାପାପୀଙ୍କୁ ଉଦ୍ଧାର କଲେ କିନ୍ତୁ ବୋଧହୁଏ ତାହାଙ୍କ ମନରେ ଏହି ଏକ ପ୍ରତିଜ୍ଞା ଯେ ଏକା ପ୍ରତାପରୁଦ୍ରଙ୍କୁ ଛାଡ଼ି ସମସ୍ତଙ୍କୁ ଉଦ୍ଧାର କରିବେ ।

ଅଦର୍ଶନୀୟାନପି ନୀଚଜାତୀନ୍,
ସଂବୀକ୍ଷତେ ହନ୍ତ ତଥାପି ନୋ ମାମ୍;
ମଦେକବର୍ଜ୍ଜଂ କୃପୟିଷ୍ୟତୀତି,
ନିର୍ଣ୍ଣୀୟ କିଂ ସୋଽବତତାର ଦେବଃ । (ଚୈଃ ମଧ—୧୧)

ତେବେ ସେ ଯଦି ଏଭଳି ପ୍ରତିଜ୍ଞା କରିଅଛନ୍ତି, ମୋର ମଧ୍ୟ ଏହି ପ୍ରତିଜ୍ଞା ରହିଲା, ସେ ଗ୍ରହଣ ନ କଲେ ମୁଁ ଏ ପ୍ରାଣ ପରିତ୍ୟାଗ କରିବି । ଯଥା—

ତାଁର ପ୍ରତିଜ୍ଞା ନା କରିବ ରାଜ ଦରଶନ,
ମୋର ପ୍ରତିଜ୍ଞା—ତାଁହା ବିନା ଛାଡ଼ିବ ଜୀବନ ।
ଯଦି ସେଇ ମହାପ୍ରଭୁର ନ ପାଇ କୃପାଧନ,
କିବା ରାଜ୍ୟ କିବା ଦେହ ସବ ଅକାରଣ । (ଚୈଃ ମଧ୍ୟ—୧୧)

ଭଟ୍ଟାଚାର୍ଯ୍ୟ ଏଥିରେ ବଡ଼ ବ୍ୟସ୍ତ ଓ ବଡ଼ ଚିନ୍ତିତ ହୋଇ ମହାରାଜାଙ୍କୁ ପ୍ରବୋଧ ଦେଇ କହିଲେ, ମହାରାଜ ଏତେ ଅଧୀର ହେଉନ୍ତୁ ନାହିଁ । ତୁମ୍ଭର ଗାଢ଼ ପ୍ରେମ ଜାତ ହୋଇଅଛି ଏବଂ ସେ ତ ଭକ୍ତାଧୀନ, ଅତଏବ ପ୍ରେମରେ ଅବଶ୍ୟ ବନ୍ଧା ପଡ଼ିବେ ।

ପରେ ପ୍ରଭୁ ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଳ ରାମାନନ୍ଦରାୟ ପ୍ରଭୃତି ମହାପ୍ରଭୁଙ୍କର ସମସ୍ତ ପ୍ରିୟବର୍ଗ ମହାରାଜାଙ୍କୁ ଦର୍ଶନ ଦାନ ଦେବାପାଇଁ ମହାପ୍ରଭୁଙ୍କୁ ନାନା ଛନ୍ଦରେ ଅନୁରୋଧ କରିଥିଲେ ଏବଂ ସେମାନଙ୍କ ମୁଖରୁ ମହାରାଜାଙ୍କ ଆର୍ତ୍ତି ଶୁଣି ମହାପ୍ରଭୁଙ୍କ ଅନ୍ତର କଟେନ ଦ୍ରବୀଭୂତ ହୋଇଥିଲା ; ତଥାପି ମହାରାଜାଙ୍କ ଉତ୍କଣ୍ଠା ଅତ୍ୟନ୍ତ ବଢ଼ାଇବା ପାଇଁ ଶୀଘ୍ର ଦର୍ଶନ ଦାନରେ ରାଜି ହୋଇ ନ ଥିଲେ । ତେବେ ପ୍ରଭୁ ଶ୍ରୀ ନିତ୍ୟାନନ୍ଦଙ୍କ ଅନୁରୋଧକ୍ରମେ ନିଜର ଗୋଟିଏ ବହିର୍ବାସ ରାଜାଙ୍କ ପାଇଁ ପ୍ରଦାନ କରିଥିଲେ । ମହାରାଜା କଟକଠାରେ ଯେ ଅମୂଲ୍ୟ ବହିର୍ବାସ ପାଇ ତାହାକୁ ମସ୍ତକରେ ଓ ହୃଦୟରେ ଧରି ନିଜ ବିରହତାପିତପ୍ରାଣକୁ ଶୀତଳ କରିଥିଲେ । ସେ ସେହି ବହିର୍ବାସକୁ ମହାପ୍ରଭୁଙ୍କ ତୁଲ୍ୟ ମଣି ନିତ୍ୟ ପୂଜା କରିବାକୁ ଲାଗିଲେ ; ପରେ ରାଜମନ୍ତ୍ରୀ ଶ୍ରୀ ରାମାନନ୍ଦଙ୍କ କୌଶଳ ଜାଲରେ ଭକ୍ତବତ୍ସଳ ଶ୍ରୀମନ୍ ମହାପ୍ରଭୁ ରାଜପୁତ୍ରଙ୍କୁ ମିଳିବାରେ

ସ୍ୱୀକୃତ ହୋଇ ଥିଲେ ଓ ଶ୍ରୀଇ ରମାନନ୍ଦ ରାଜଦ୍ୱୟଙ୍କୁ ଆଣାଇ ମହାପ୍ରଭୁଙ୍କସହ ମିଳାଇ ଥିଲେ।

ଶ୍ରୀ ଜଗନ୍ନାଥ ଦେବଙ୍କର ରଥଉତ୍ସବ ସମୟରେ ମହାରାଜା ପୁରୀକୁ ଆସିଥିଲେ ଓ ରଥଯାତ୍ରାଦିନ ସେ ଦେଖିବାକୁ ଗଲେ। ରଥ ଆଗରେ ମହାପ୍ରଭୁଙ୍କ ଗଣମାନେ ୭ ସମ୍ପ୍ରଦାୟରେ ବିଭକ୍ତ ହୋଇ ସାତସ୍ଥାନରେ କୀର୍ତ୍ତନ କରୁଅଛନ୍ତି ଓ ମହାପ୍ରଭୁ ଏକକାଳରେ ସେ ସାତଠାରେ ଉପସ୍ଥିତ ହୋଇ ପ୍ରତ୍ୟେକ କୀର୍ତ୍ତନ ଦଳର କୀର୍ତ୍ତନ ମାଧୁରୀ ଆସ୍ୱାଦନ କରୁଅଛନ୍ତି। ଏହି ଅଦ୍ଭୁତକର ବ୍ୟାପାର ଦେଖି ସେ ତାହା କାଶୀମିଶ୍ରଙ୍କଠାରେ ଗୋପନରେ ପ୍ରକାଶ କଲେ। ଶ୍ରୀ କାଶୀ ମିଶ୍ର କହିଲେ, "ମହାପ୍ରଭୁ ତୁମ୍ଭକୁ ପ୍ରତ୍ୟକ୍ଷରେ ପ୍ରତ୍ୟାଖ୍ୟାନ କଲେହେଁ ପରୋକ୍ଷରେ ମହାକୃପା କରୁଅଛନ୍ତି। ତାହାଙ୍କ କୃପା ନ ଥିଲେ ତୁମ୍ଭେ ତାହାଙ୍କର ଏ ମହଦୈଶ୍ୱର୍ଯ୍ୟ ଦେଖି ପାଇ ନ ଥାନ୍ତ। ଶ୍ରୀ ଜଗନ୍ନାଥ ଦେବଙ୍କ ରଥ ଉପରେ ତୁମ୍ଭର ଝାଡୁସେବା ଦେଖି ମହାପ୍ରଭୁ ନିଶ୍ଚୟ ତୁଷ୍ଟ ହୋଇ ତୁମ୍ଭ ପ୍ରତି ଏତେଦୂର କୃପା ପ୍ରକାଶ କରି ଅଛନ୍ତି।"

ମହାପ୍ରଭୁ ସେ ସାତମଣ୍ଡଳ କୀର୍ତ୍ତନକୁ ଏକତ୍ର କରି ଏକ ମହାକୀର୍ତ୍ତନ ଆରମ୍ଭକଲେ ଓ ନିଜେ କେନ୍ଦ୍ରରେ ରହି ଅପୂର୍ବ ଭଙ୍ଗୀରେ ନୃତ୍ୟ କରିବାକୁ ଲାଗିଲେ। ତାହାଙ୍କ ଶ୍ରୀଅଙ୍ଗରେ ଅଷ୍ଟସାତ୍ତ୍ୱିକ ଭାବମାନ ନିଜ ନିଜ ପୂର୍ଣ୍ଣ-ବିକାଶ ସ୍ଥାନ ପାଇ ଉତ୍କୃଷ୍ଟରୂପେ କ୍ରୀଡ଼ା କରିବାକୁ ଲାଗିଲେ। ମହାପ୍ରଭୁ କ୍ଷଣେ କ୍ଷଣେ ମୂର୍ଚ୍ଛିତହୋଇ ପଡ଼ୁଥାଆନ୍ତି। ଶ୍ରୀଗୁଣ୍ଡିଚାଯାତ୍ରା, ନାନା ଦେଶରୁ ଲକ୍ଷ ଲକ୍ଷ ଯାତ୍ରୀ ଆସିଅଛନ୍ତି ଓ ରଥ ଆଗରେ ଏ ଅଦୃଷ୍ଟପୂର୍ବ ମହାକୀର୍ତ୍ତନ ମଧ୍ୟରେ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ଅଦ୍ଭୁତ ଭାବ ବିକାରମାନ ଦେଖି ସମସ୍ତ ଯାତ୍ରୀ ମହାପ୍ରଭୁଙ୍କୁ ଦେଖିବାକୁ ସମୁତ୍କଣ୍ଠିତ। ଅତଏବ ସେଠାରେ ଜନତା ଭୟାନକ ଭିଡ଼ହୋଇ ଉଠିଲା। ମହାପ୍ରଭୁଙ୍କୁ ଏ ଜନତାରୁ ରକ୍ଷା କରିବା ନିମିତ୍ତ ତାହାଙ୍କର ପାର୍ଷଦଗଣ ତାହାଙ୍କ ଚତୁର୍ଦ୍ଦିଗରେ କ୍ରମେ ତିନ

ମଣ୍ଡଳ ହୋଇ ଅବସ୍ଥାନ କଲେ । ଏହି ତିନି ମଣ୍ଡଳ ମଧ୍ୟରେ ଶେଷ ବାହ୍ୟମଣ୍ଡଳରେ ମହାରାଜା ପ୍ରତାପରୁଦ୍ର ନିଜେ ଉପସ୍ଥିତ ରହି ମହାପ୍ରଭୁଙ୍କୁ ଲୋକ ଭିଡ଼ରୁ ରକ୍ଷା କରୁଥିଲେ । ଯଥା—

ବାହ୍ୟରେ ପ୍ରତାପରୁଦ୍ର ଲେଇଣ୍ଟା ପାତ୍ରଗଣ
ମଣ୍ଡଳୀ ହଇସ୍ଥା କରେ ଲୋକ ନିବାରଣ
( ଚୈଃ ମଧ୍ୟ ୧୩ )

ମହାପ୍ରଭୁ ଶ୍ରୀରାଧା ଭାବରେ ଭାବିତ । ତାହାଙ୍କର ଭାବ, ଶ୍ରୀକୃଷ୍ଣ ଦ୍ୱାରକା ଧାମରୁ ଶ୍ରୀବୃନ୍ଦାବନକୁ ଯାଉଅଛନ୍ତି, ତେଣୁ ସେଥିପାଇଁ ଭାବ ତନ୍ମୟତ ଶ୍ରୀଗୌରଙ୍କର ଆନନ୍ଦର ସୀମାନାହିଁ । ଅଷ୍ଟସାତ୍ତ୍ୱିକ ଭାବ ସକଳ ଏକ କାଳରେ ତାହାଙ୍କ ଶ୍ରୀଅଙ୍ଗରେ ଉଦୟ ହେଉଅଛି । ଯଥା—

ମାଂସ ବ୍ରଣସହ ରୋମ ବୃନ୍ଦ ପୁଲକିତ
ଶିମୁଳୀର ବୃକ୍ଷ ଯେନ କଣ୍ଟକେ ବେଷ୍ଟିତ ।
ଏକେକ ଦନ୍ତେର କମ୍ପ ଦେଖି ଲାଗେ ଭୟ
ଲୋକେ ଜାନେ ଦନ୍ତ ସବ ଖସିଯା ପଡ଼ୟ ।
ସର୍ବାଙ୍ଗେ ପ୍ରସ୍ୱେଦ ଛୁଟେ ତାତେ ରକ୍ତୋଦ୍‌ଗମ,
ଜଜଗଗ ଜଜଗଗ ଗଦ୍‌ଗଦ ବଚନ ।
ଜଳଯନ୍ତ୍ର ଧାରା ଯେନ ବହେ ଅଶ୍ରୁଜଳ
ଆଶ ପାଶ ଲୋକସବ ଭିଜିଲ ସକଲ ।
ଦେହକାନ୍ତି ଗୌର କଭୁ ଦେଖିୟେ ଅରୁଣ,
କଭୁ କାନ୍ତିଦେଖି ଯେନ ମଲ୍ଲିକା ପୁଷ୍ପସମ ।
କଭୁ ସ୍ତମ୍ଭ କଭୁ ପ୍ରଭୁ ଭୂମିତେ ପଡ଼ୟ
ଶୁଷ୍କ କାଷ୍ଠସମ ହସ୍ତପଦ ନା ଚଲୟ ।
କଭୁ ଭୂମେ ପଡ଼େ, କଭୁ ହୟ ଶ୍ୱାସହୀନ
ଯାହା ଦେଖି ଭକ୍ତଗଣେର ହୟ ପ୍ରାଣକ୍ଷୀଣ ।

କଭୁ ନେତ୍ର ନାସାଜଲ ମୁଖେ ପଡ଼େ ଫେନ
ଅମୃତେର ଧାର ଚନ୍ଦ୍ର ବିମ୍ବେ ବହେ ଯେନ ।
(ଚୈଃ ମଧ୍ୟ ୧୩)

ଏହିପରି ଭାବରେ ଉଦ୍ଦଣ୍ଡ ନୃତ୍ୟ କରୁ କରୁ ମହାପ୍ରଭୁଙ୍କର ଭାବାନ୍ତର ଉପସ୍ଥିତ ହେଉଅଛି, ସେ ସେତେବେଳେ ମଧୁରସ୍ୱରରେ ଗୀତ ଗାଇ ଶ୍ରୀ ଜଗନ୍ନାଥଦେବଙ୍କ ଆଗରେ ଅଦ୍ଭୁତ ନୃତ୍ୟ କରୁଅଛନ୍ତି । ଏହି ସବୁ ପ୍ରେମବିକାର ଦେଖି ଦର୍ଶକବୃନ୍ଦ ତଟସ୍ଥ ହେଉଅଛନ୍ତି । ସେମାନେ ଅନେକେ ଏହା ଉପଲବ୍ଧି କରୁଅଛନ୍ତି ଯେ ମହାପ୍ରଭୁ ଓ ଶ୍ରୀଜଗନ୍ନାଥଦେବ ଉଭୟ ଚକ୍ଷୁଦ୍ୱାର ଦେଇ ପରସ୍ପରଙ୍କଠାରେ ମନୋଗତଭାବ ପ୍ରକାଶ କରୁଅଛନ୍ତି । ଶ୍ରୀଲ କୃଷ୍ଣଦାସ କବିରାଜ ସେ ଚିତ୍ର ମଧ୍ୟଲୀଳା ୧୩ ପରିଚ୍ଛେଦରେ ଅତି ସୁନ୍ଦର ଭାବରେ ଅଙ୍କନ କରିଅଛନ୍ତି । ମହାପ୍ରଭୁଙ୍କର ଏହି ସକଳ ଅଦ୍ଭୁତ ଭାବବିକାର ଦର୍ଶନ କରି ଦର୍ଶକମାନଙ୍କ ହୃଦୟରେ ଶ୍ରୀକୃଷ୍ଣପ୍ରେମ ଉଚ୍ଛଳିତ ହେଉଅଛି । ଯଥା—

କୃଷ୍ଣପ୍ରେମ ଉଚ୍ଛଳିଲ ହୃଦୟେ ସଭାର,
ପ୍ରେମେ ନାଚେ ଗାୟ ଲୋକ କରେ କୋଲାହଲ ।
(ଚୈଃ ମଧ୍ୟ ୧୩)

ଲୋକଙ୍କର କୃଷ୍ଣପ୍ରେମ ଉଚ୍ଛୁଳିବ କାହିଁକି; ମହାପ୍ରଭୁଙ୍କର ଅବତୀର୍ଣ୍ଣ ହେବା ଓ ପ୍ରଚାରରେ ଭାଗ କରିବାର ଏକ ପ୍ରଧାନ ଉଦ୍ଦେଶ୍ୟତ ସେହି ।

ମହାପ୍ରଭୁ ଏହି ରୂପ ବିହ୍ୱଳ ଭାବରେ ନୃତ୍ୟ କଲାବେଳେ ଯାଇଁ ଯାଇଁ ମହାରାଜାଙ୍କ ସମ୍ମୁଖରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ମହାରାଜା ତାହାଙ୍କୁ ପତନୋନ୍ମୁଖ ଦେଖି ଧରି ପକାଇଲେ । ସେତେବେଳେ ମହାପ୍ରଭୁଙ୍କର ବାହ୍ୟଜ୍ଞାନ ଆସିଲା ଏବଂ ସେ କହିଲେ "ଛି ଛି, ମୋର ବିଷୟୀ ଅଙ୍ଗସ୍ପର୍ଶ ହେଲା ।" ମହାରାଜା ଦୁଃଖରେ ଭୀତ ହୁଅନ୍ତେ ସାର୍ବଭୌମ ତାହାଙ୍କୁ କହିଲେ, "ମହାରାଜ ! ଭୀତ ହୁଅନ୍ତୁ ନାହିଁ, ମହାପ୍ରଭୁଙ୍କର ଅନ୍ତରରେ

ଆପଣଙ୍କ ପ୍ରତି ପୂର୍ଣ୍ଣଦୟା ନଥିବାରୁ ସେ ଏ ଭ୍ରମବଶତଃ ଆପଣଙ୍କୁ ତାହାଙ୍କ ସ୍ପର୍ଶସୁଖ ଅନୁଭବ କରାଇ ଥାନ୍ତେ । ତାହା ଆପଣଙ୍କ ପ୍ରତି ମହାପ୍ରସାଦର ଚିହ୍ନ ।"

ତତ୍ପରେ ବଳଦାଣ୍ଡ ପାର୍ଶ୍ୱସ୍ଥ ବଳଗଣ୍ଡିନାମକ ସ୍ଥାନରେ ରଥ ପ୍ରବେଶ କରନ୍ତେ ଶ୍ରୀଜଗନ୍ନାଥଦେବଙ୍କର ଭୋଗ ବିଶେଷ ନିମିତ୍ତ ରଥର ଗତି ସ୍ଥଗିତ ହେଲା । ସେତେବେଳେ ମହାପ୍ରଭୁ ପାର୍ଶ୍ୱସ୍ଥ ଉପବନ ବିଶେଷରେ ପ୍ରବେଶ କରି ବିଶ୍ରାମ କଲେ । ସେ ପ୍ରେମାନନ୍ଦରେ ଅବଶ ଭାବରେ ରହିଅଛନ୍ତି ଏମନ୍ତ ସମୟରେ ସାର୍ବଭୌମଙ୍କ ପରାମର୍ଶାନୁସାରେ ମହାରାଜା ଶ୍ରୀପ୍ରତାପରୁଦ୍ରଦେବ ରାଜବେଶ ପରିତ୍ୟାଗ ପୂର୍ବକ ଭକ୍ତୋଚିତ ବେଶଧାରଣ କରି ଏକାକୀ ଧୀରେ ଧୀରେ ସଶଙ୍କିତ ଚିତ୍ତରେ ଆସି ମହାପ୍ରଭୁଙ୍କ ଶ୍ରୀପଦକମଳ ଧାରଣପୂର୍ବକ ପାଦସମ୍ବାହନ କରିବାକୁ ଲାଗିଲେ ଓ ମୁଖରେ ଶ୍ରୀମଦ୍ ଭାଗବତର ରାସ ଶ୍ଳୋକ ଆବୃତ୍ତି କରିବାକୁ ଲାଗିଲେ । ମହାପ୍ରଭୁ ଆବେଗରେ "ବୋଲ ବୋଲ" କହୁଥାଆନ୍ତି ଓ ମହାରାଜା କ୍ରମେ ଶ୍ଳୋକମାନ ଆବୃତ୍ତି କରୁଥାନ୍ତି ମହାରାଜାଙ୍କ ଦୁଇନୟନରୁ ଦର ଦର ଭାବରେ ଅଶ୍ରୁଧାରା ବହି ଯାଉଥାଏ, କଣ୍ଠ ରୁଦ୍ଧହୋଇ ଆସୁଥାଏ । ଏହିପରି ସ୍ୱ ଭକ୍ତି ଭକ୍ତି ପୂର୍ଣ୍ଣ ପରୀକ୍ଷାରେ ଶ୍ଳୋକପାଠ କରୁ କରୁ ନିମ୍ନ ଶ୍ଳୋକଟି ଆବୃତ୍ତି କଲେ ।

ତବକଥାମୃତଂ ତପ୍ତଜୀବନଂ, କବିଭିରୀଡ଼ିତଂ କଲ୍ମଷାପହଂ
ଶ୍ରବଣ ମଙ୍ଗଳଂ ଶ୍ରୀମଦାତତଂ ଭୁବି ଗୃଣନ୍ତି ଯେ ଭୂରିଦାଜନାଃ
(ଚୈଃ ମଧ୍ୟ ୧୪)

ମହାରଜାଙ୍କର ପ୍ରେମାର୍ଦ୍ରିରୂପ ପ୍ରବଳ ବନ୍ୟାରେ ମହାପ୍ରଭୁଙ୍କର ଧୈର୍ଯ୍ୟବନ୍ଧ ଭାଙ୍ଗିଗଲା । ସେ ଉତ୍କଣ୍ଠାରେ ପରିଜାତ ହେଲେ ଓ ରାଜଦର୍ଶନ ନ କରିବା ରୂପ ପଣ ପାଶୋରି ଯାଇ ପ୍ରେମରେ ଅସ୍ଥିର ହୋଇ ଭୂରିଦା ଭୂରିଦା କହି ମହାରଜାଙ୍କୁ ବାହୁଲତାରେ ଆଲିଙ୍ଗନ କଲେ, ଏବଂ ତାହାଙ୍କୁ ଷଡ଼ ଐଶ୍ୱର୍ଯ୍ୟ ମଧ୍ୟ ସେତେବେଳେ ଦେଖାଇଲେ । ଏହିରୂପେ ଦୃଢ଼ଭକ୍ତି

ଦ୍ୱାର ଭକ୍ତାଧୀନ ମହାପ୍ରଭୁଙ୍କୁ ବଶୀଭୂତ କରି ମହାରାଜା ଯେ ତେତେବେଳେ ଯେ ଅପୂର୍ବ ଆନନ୍ଦପ୍ରାପ୍ତ ହୋଇଥିଲେ ତାହା ତାହାଙ୍କୁହିଁ ଜଣା । ମହାପ୍ରଭୁଙ୍କର ବିଶେଷ କୃପାପାତ୍ର ଶ୍ରୀଳ କବିରାଜ ଗୋସ୍ୱାମୀ ବା କିଛି ଅନୁଭବ କରିଥିବେ । ମାଦୃଶମୂର୍ଖ ଏ ଅଧମ ସେ ଭାବରାଶି ମଧ୍ୟରୁ କଣାମାତ୍ର ପ୍ରକାଶ କରିବାକୁ ଅକ୍ଷମ ।

ଏହିରୂପେ ସାର୍ବଭୌମ, ରାମାନନ୍ଦ ପ୍ରଭୃତି ମୁଖ୍ୟ ମୁଖ୍ୟ ବ୍ୟକ୍ତି ଓ ନିଜେ ମହାରାଜା ପ୍ରତାପରୁଦ୍ର ଏମାନେ ସମସ୍ତେ ମହାପ୍ରଭୁଙ୍କ ସମୋହନମନ୍ତ୍ରରେ ମୁଗ୍ଧହୋଇ ପଡ଼ି ତାହାଙ୍କର ଶ୍ରୀପଦକମଳରେ ଆଶ୍ରିତ ହେଲେ ।

ସେମାନଙ୍କ ଅସୀମ ପ୍ରଭାବଦ୍ୱାରା ସମସ୍ତ ଉତ୍କଳର ଲୋକମାନେ ମହାପ୍ରଭୁଙ୍କ ପଥରେ ପଥିକ ହେବାକୁ ଲାଗିଲେ । କେହି କେହି ବା ନିଜେ ନିଜେ ଅନୁକରଣ କଲେ ଓ କେହିବା ଭୟରେ ସେ ଧର୍ମ ଅବଲମ୍ବନ କଲେ । କିନ୍ତୁ ଯେଉଁମାନେ ପ୍ରଥମେ ଭୟରେ ଅବଲମ୍ବନ କଲେ ସେମାନେ ଭକ୍ତିଦେବୀଙ୍କ ନିଜକୃପାରୁ ଓ ମହାପ୍ରଭୁଙ୍କ ବିଶେଷ କୃପାହେତୁ ପରେ ଉତ୍ତମ ଭକ୍ତ ହୋଇ ଉଠିଲେ । ଏବଂ ଶ୍ରୀ ଜଗନ୍ନାଥଦେବଙ୍କୁ ଦର୍ଶନ କରିବାକୁ ଆସି ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ସମସ୍ତ ଭାରତର ଅଧିକାଂଶ ଲୋକ ସାତ୍ତ୍ୱିକଭାବ କୃଷ୍ଣମମାନ ମୂର୍ତ୍ତି ଧାରଣ କଲାପରି ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ବିକଶିତ ଦେଖି ଓ ତାହାଙ୍କର କୃପାଦୃଷ୍ଟି ଓ କେହିବା ମଧୁରାଳାପ ଲାଭକରି ତାହାଙ୍କ ପ୍ରଚାରିତ ପ୍ରେମଧର୍ମ ଅବଲମ୍ବନ କରିବାକୁ ଲାଗିଲେ ।

ମହାପ୍ରଭୁ ଯେ କେବଳ ଶ୍ରୀ ଗୁଣ୍ଡିଚା ଯାତ୍ରାରେ ଏହିରୂପ ଲୀଳାମାନ ପ୍ରଦର୍ଶନ କରାଇଥିଲେ ତାହା ନୁହେ, ତାହାଙ୍କର ପୁରୀବାସ କାଳରେ ସେ ଶ୍ରୀ ଜଗନ୍ନାଥ ଦେବଙ୍କର ସମସ୍ତ ଯାତ୍ରା । ଅର୍ଥାତ୍ ସ୍ନାନ, ଗୁଣ୍ଡିଚା, ଝୁଲଣ, ଶ୍ରୀକୃଷ୍ଣଜନ୍ମୋତ୍ସବ, ବସନ୍ତଦୋଳ, ଚନ୍ଦନ ପ୍ରଭୃତି ସମସ୍ତ ଯାତ୍ରାମାନ ଅତି ସମାରୋହରେ ସମ୍ପନ୍ନ କରାଉଥିଲେ । ସ୍ୱୟଂ ଶ୍ରୀକୃଷ୍ଣ ଭକ୍ତଭାବରେ ଅବତୀର୍ଣ୍ଣ ହୋଇ ତାହାଙ୍କର ଶ୍ରୀ ବୃନ୍ଦାବନ ବିହାରର ସମସ୍ତ ଲୀଳାମାନ ନିଜ ପରିବାର-

ମାନଙ୍କ ସଙ୍ଗେ ଉପଭୋଗ କରୁଅଛନ୍ତି ଅତଏବ ସେଥିରେ ଯେ ରସ ଓ ଚମତ୍କାରିତା
ଅନୁଭୂତ ହେଉଥିଲା, କେବଳ ଅନୁଭବୀ ବ୍ୟକ୍ତି ଅନ୍ୟ କାହାର ତାହା
ପ୍ରକାଶ କରିବାର ସାଧ୍ୟ ନାହିଁ । ସେ ଉତ୍ସବମାନଙ୍କର କିଛି କିଛି
ଅଦ୍ଭୁତ ଶ୍ରୀଲ କବିରାଜ ଗୋସ୍ୱାମୀ ଦିଗ୍‌ଦର୍ଶନ ସ୍ୱରୂପ ଦର୍ଶାଇ ଅଛନ୍ତି ।
ଯେଉଁମାନେ ଶ୍ରୀ ଚୈତନ୍ୟଚରିତାମୃତ ପାଠ କରି ନାହାନ୍ତି ସେମାନଙ୍କ
ପାଇଁ ମୁଁ ଯତ୍କିଞ୍ଚିତ ଏଠାରେ ଦର୍ଶାଇ ଅଛି ।

ମହାପ୍ରଭୁ ଶ୍ରୀମନ୍ କାଶୀମିଶ୍ର, ଦେଉଳ ପଡ଼ିଆ ଓ ସାର୍ବଭୌମଙ୍କୁ ଡାକି
କହିଲେ, ଗୁଣ୍ଡିଚା ଯାତ୍ରା ଉପସ୍ଥିତ, ଶ୍ରୀ ଜଗନ୍ନାଥଦେବ ନୀଳାଚଳ ଛାଡ଼ି
ସୁନ୍ଦରାଚଳକୁ ବିଜେ କରିବେ ଓ ସେଠାରେ ଶ୍ରୀରାଧାଦି ଗୋପୀମାନଙ୍କ
ସହ ୯ ଦିନ ବିହାର କରିବେ, ଅତଏବ ସେହି ଗୁଣ୍ଡିଚାମନ୍ଦିର ମାର୍ଜନର ଭାର
ମୋତେ ଅର୍ପଣ କରନ୍ତୁ । ଦେଉଳ ପଡ଼ିଆ ଉତ୍ତର କଲେ, ଆମ୍ଭେମାନେ
ସମସ୍ତେ ଆପଣଙ୍କର ଭୃତ୍ୟ, ଆପଣଙ୍କର ଯେ ଆଜ୍ଞା ତାହା ଆମ୍ଭମାନଙ୍କର
ଶିରୋଧାର୍ଯ୍ୟ, ବିଶେଷତଃ ମହାରାଜା ମୋତେ ଆଦେଶ ଦେଇଛନ୍ତି
ମହାପ୍ରଭୁଙ୍କର ଯେ ଭଳି ଅଭିରୁଚି ହେବ ତାହା ତତ୍କ୍ଷଣ୍ଣ ସମ୍ପାଦନ କରିବ।
ଅତଏବ ଆପଣଙ୍କର ଯଦି ଗୁଣ୍ଡିଚା ମାର୍ଜନରୂପ ଏକଲୀଳା କରିବାର ଇଚ୍ଛା
ହେଉଅଛି, ମୁଁ ନୂତନ ଘଟ ଓ ନୂତନ ସମ୍ମାର୍ଜନୀ ଆଣି ଦେଉଛି, ଏହା କହି
ସେ ଶତଘଟ ଓ ଶତସମ୍ମାର୍ଜନୀ ଆଣାଇ ମହାପ୍ରଭୁଙ୍କ ଆଗରେ ରଖାଇଲେ ।
ତତ୍ପର ଦିବସ ପ୍ରଭାତ ସମୟରେ ମହାପ୍ରଭୁ ନିଜଗଣଙ୍କ ଅଙ୍ଗରେ ନିଜେ
ଶ୍ରୀହସ୍ତରେ ଚନ୍ଦନ ଲେପନ କରି ସମସ୍ତଙ୍କୁ କଳସୀ ଓ ସମ୍ମାର୍ଜନୀ ଏକ ଏକ
କରି ବାଣ୍ଟିଦେଲେ ଏବଂ ସମସ୍ତେ ଗୁଣ୍ଡିଚା ମନ୍ଦିରକୁ ଯାଇ ତାହା ପରିଷ୍କାର
କରିବାକୁ ଲାଗିଲେ । ମହାପ୍ରଭୁ ନିଜେ ଏକ ସମ୍ମାର୍ଜନୀ ନେଇ ଭିତରଗୃହ
ଓ ସିଂହାସନ ଶୋଧନ କଲେ । ମହାପ୍ରଭୁ କୃଷ୍ଣ କୃଷ୍ଣ କହୁଅଛନ୍ତି ଓ ମନ୍ଦିର
ଶୋଧନ କରୁଅଛନ୍ତି, ଏବଂ ଭକ୍ତମାନେ ମଧ୍ୟ ତାହାଙ୍କର ଅନୁକରଣ କରୁ-
ଅଛନ୍ତି; ଏହିପରି ପରିଷ୍କାର କରି ଘାସ, ଧୂଳି ଓ କଙ୍କରମାନ ଏକତ୍ରିତ
କରନ୍ତେ ମହାପ୍ରଭୁ କହିଲେ ଦେଖ, କାହାର ଅବର୍ଜନା କେତେ, କଳୁ

ଦେଖାଗଲା ସମସ୍ତଙ୍କଠାରୁ ମହାପ୍ରଭୁଙ୍କ ଅବର୍ଜନା ଅତି ଅଧିକ ହୋଇଅଛି । ଅତି ଉତ୍ତମରୂପେ ପରିଷ୍କାର କରାଇବା ପରେ ଜଳ ଅଣାଇ ଢଳାଇଲେ । ସମସ୍ତଙ୍କ ମୁଖରେ ଶ୍ରୀକୃଷ୍ଣ ନାମ, କୃଷ୍ଣନାମ ସଙ୍କେତରେ ଡକା ଡକି ହେଉ-ଅଛନ୍ତି, ଆନନ୍ଦର ସୀମା ନାହିଁ, ସମସ୍ତେ ସେବାରେ ମତ୍ତ ଓ ସେବାକାର୍ଯ୍ୟ ସୁଚାରୁରୂପେ ସମ୍ପନ୍ନ ହୁଅନ୍ତେ ପରସ୍ପର ଜଳ ଫିଙ୍ଗା ଫିଙ୍ଗି ଓ ସ୍ୱେଦଜଳରେ ହୋଇଗଡ଼ ହେବାକୁ ଲଗିଲେ । ଏହାପରେ ମହା ସଙ୍କୀର୍ତ୍ତନ ଆରମ୍ଭ କଲେ । ଚତୁର୍ଦ୍ଦିଗରେ ଭକ୍ତଗଣ କୀର୍ତ୍ତନ କରୁଅଛନ୍ତି ଓ ମଧ୍ୟରେ ମହାପ୍ରଭୁ ମତ୍ତସିଂହ ପ୍ରାୟ ନୃତ୍ୟ କରୁଅଛନ୍ତି । ଶ୍ରୀ ଅଙ୍ଗରେ କମ୍ପ ପୁଲକାଦି ଅଷ୍ଟସାତ୍ତ୍ୱିକ ଭାବ ଉଦୟ ହେଉଅଛି, ଅଶ୍ରୁରେ ନିଜ ସମସ୍ତ ଅଙ୍ଗ ଭିଜି ଭକ୍ତମାନଙ୍କ ଅଙ୍ଗ ଭିଜି ଯାଉଅଛି । ସ୍ୱରୂପ ଗୋସାଇଁ ଉଚ୍ଚରେ ଗାନ କରୁଅଛନ୍ତି ଓ ମହାପ୍ରଭୁ ଉଦ୍ଦଣ୍ଡ ନୃତ୍ୟ କରୁଅଛନ୍ତି । ନୃତ୍ୟାବସାନରେ କିଛିକ୍ଷଣ ବିଶ୍ରାମ କରି ମହାପ୍ରଭୁ ନିଜ-ଗଣ ସଙ୍ଗେ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ସ୍ନାନ କରିବାକୁ ବାହାରିଲେ । ପଥରେ କୀର୍ତ୍ତନ କରି କରି ସରୋବରରେ ପହଞ୍ଚି ସେଠାରେ ଜଳକ୍ରୀଡ଼ା ଆରମ୍ଭ କଲେ । ସେ ଜଳକ୍ରୀଡ଼ାର ଅପୂର୍ବ ଶୋଭା କି ବର୍ଣ୍ଣନ କରାଯାଇ ପାରେ ! ଶ୍ରୀଲ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଓ ଶ୍ରୀଲ ରାମାନନ୍ଦରାୟଙ୍କ ତୁଲ୍ୟ ଗମ୍ଭୀର-ଶାସ୍ତ୍ର ବ୍ୟକ୍ତିମାନେ ଗାମ୍ଭୀର୍ଯ୍ୟ ପରିତ୍ୟାଗ ପୂର୍ବକ ଜଳ ଫିଙ୍ଗା ଫିଙ୍ଗି ହେବାକୁ ଲଗିଲେ । କିଏ ସନ୍ତରଣ କରୁଅଛି, କିଏ ଜଳ ମଧ୍ୟରେ ବୁଡ଼ି ଦୂରକୁ ଯାଇ କୁମ୍ଭୀରବତ୍ ଅପରର ଗୋଡ଼ ଧରୁଅଛି, କିଏ ବା ଜଳପୃଷ୍ଠରେ ହାତ ଛାରକୁ ଚଳାଉ ଅଛି । ଏହିରୂପ ନାନାକୌତୁକରେ ଜଳକ୍ରୀଡ଼ା ସମାପନ କରି ବସ୍ତ୍ର ପରିଧାନ ପୂର୍ବକ ଉପବନକୁ ଯାଇ ସେଠାରେ କାଶୀମିଶ୍ର ଓ ତୁଳସୀ ପରିଛାଙ୍କ କର୍ତ୍ତୃକ ଆନୀତ ପିଠା ପଣା ଓ ଅନ୍ନ ବ୍ୟଞ୍ଜନାଦି ମହାପ୍ରସାଦ ଅତି କୌତୁକରେ ସେବନ କରିବାକୁ ଲାଗିଲେ । ମହାପ୍ରଭୁ ପୁରୀଭାରତୀ ପ୍ରଭୃତି ମାନ୍ୟଜନଙ୍କୁ ଘେନି ପିଣ୍ଡା ଉପରେ ବସିଲେ ଓ ଅନ୍ୟ ସମସ୍ତେ ନିମ୍ନତଳେ ସେ ମହାପ୍ରସାଦ ସେବନ କଲେ । ମଧ୍ୟେ ମଧ୍ୟେ ମଧୁର ସ୍ୱରରେ ହରିଧ୍ୱନି ହେଉଅଛି, ଓ ମହାପ୍ରଭୁ ଭକ୍ତଙ୍କ ମନ ଜାଣି ଏହାଙ୍କୁ ଅମୁକ ମହାପ୍ରସାଦ ଦିଅ, ତାହାଙ୍କୁ ଅମୁକ ମହାପ୍ରସାଦ ଦିଅ ଏହିରୂପ

ଅଦେଶ କରୁଅଛନ୍ତି । ବ୍ରଜରେ ବନ୍ୟ ଭୋଜନଲୀଳା ଅଛି ଏଠାରେ ଅନୁଘଟ ହେଉଅଛି । ଶ୍ରୀଳ ଜଗଦାନନ୍ଦ କୌଶଳକ୍ରମେ ନାନାପ୍ରକାର ମିଷ୍ଟ ମିଷ୍ଟ ମହାପ୍ରସାଦ ମହାପ୍ରଭୁଙ୍କ ପତ୍ରରେ ଦେଉଅଛନ୍ତି ଓ ଜଗଦାନନ୍ଦଙ୍କ ମନରକ୍ଷା ପାଇଁ ମହାପ୍ରଭୁ ତାହା ସେବନ କରୁଅଛନ୍ତି । କେତେବେଳେ ଅବା ଶ୍ରୀଳ ସ୍ୱରୂପ ଗୋସାଇଁ କିଛି ଉତ୍କୃଷ୍ଟ ମହାପ୍ରସାଦ ଦେଇ କହୁଛନ୍ତି

ସାର୍ବଭୌମ କହେ— ଆମି ତାର୍କିକ କୁବୁଦ୍ଧି,
ତୋମାର ପ୍ରସାଦେ ଆମାର ଏ ସମ୍ପଦ ସିଦ୍ଧି ।

“ପ୍ରଭୁ ଦେଖନ୍ତୁନା, ଏହା ଶ୍ରୀ ଜଗନ୍ନାଥ କରୁପ ଅସ୍ୱାଦନ କରିଅଛନ୍ତି । ସ୍ୱରୂପଙ୍କ ସ୍ନେହାଧିକ୍ୟରେ ମହାପ୍ରଭୁ ତାହା ଅସ୍ୱାଦନ କରୁଅଛନ୍ତି । ସାର୍ବଭୌମ ଓ ରାମାନନ୍ଦଙ୍କୁ ମହାପ୍ରଭୁ ନିଜ ପାଖରେ ବସାଇ ଅଛନ୍ତି ଓ ସାର୍ବଭୌମଙ୍କ ଭଗ୍ନୀପତି ଶ୍ରୀ ଗୋପୀନାଥାଚାର୍ଯ୍ୟ ଉତ୍ତମ ମହାପ୍ରସାଦ ଆଣି ସାର୍ବଭୌମଙ୍କ ପତ୍ରରେ ଦେଇ କହୁଛନ୍ତି “ଏ ମହାପ୍ରସାଦ ସେବନ ଲୀଳା ବେଶି ମଧୁର ନା ତୁମ୍ଭ ବେଦାନ୍ତ ଚର୍ଚ୍ଚା ବେଶି ମଧୁର ।” ସାର୍ବଭୌମ ତହିଁରେ କହୁଅଛନ୍ତି ।—

ମହାପ୍ରଭୁ ତନା କେହୋ ନାହିଁ ଦୟାମୟ
କାକେରେ ଗରୁଡ଼ କଲେ ଐଛେ କୋନ ହୟ ?
ତାର୍କିକ ଶୃଗାଲ ସଙ୍ଗେ ଭେଉ ଭେଉ କରି
ସେଇ ମୁଖେ ଏବେ ସଦା କହି କୃଷ୍ଣ ହରି ।
କାହାଁ ବହିର୍ମୁଖ ତାର୍କିକ ଶିଷ୍ୟଗଣ ସଙ୍ଗେ,
କାହାଁ ଏଇ ସଙ୍ଗ ସୁଧା ସମୁଦ୍ର ତରଙ୍ଗେ ।

(ଚୈ: ମଧ୍ୟ—୧୨)

ଶ୍ରୀମଦ ଅଦ୍ୱୈତାଚାର୍ଯ୍ୟ ଓ ଶ୍ରୀମଦ୍ ନିତ୍ୟାନନ୍ଦଙ୍କର ଅଧିକାଂଶ ସମୟରେ ପ୍ରେମ କଳହ ହୋଇଥାଏ, ଅନ୍ନ ମଧ୍ୟ ସେ କଳହର ବିଷୟ ନାହିଁ ।

ଶ୍ରୀଲ କବିରାଜ ଗୋସାଇଁଙ୍କ ଭାଷାରେ ସେ କଳହରୁ ପଦେ ଅଧେ ପାଠକେ ଶୁଣନ୍ତୁ ।

ଅଦ୍ୱୈତ କହେ ଅବଧୂତ ସଙ୍ଗେ ଏକପଂକ୍ତି,
ଭୋଜନ କରି, ନା ଜାନିବେ ହବେ କୋନଗତି ।
ପ୍ରଭୁ ତ ସନ୍ୟାସୀ ଉହାଁର ନାହିଁ ଅପଚୟ,
ଅନ୍ନ ଦୋଷେ ସନ୍ୟସୀର ଦୋଷ ନାହିଁ ହୟ ।
"ନାନ୍ନ ଦୋଷେଣ ମସ୍କରୀ" ଏଇ ଶାସ୍ତ୍ରେର ପ୍ରମାଣ,
ଗୃହସ୍ଥ ବ୍ରାହ୍ମଣ ଆମାର ଏଇ ଦୋଷ ସ୍ଥାନ ।
ଜନ୍ମକୁଳଶୀଳାଚାର ନା ଜାନି ଯାହାର,
ତାର ସଙ୍ଗେ ଏକପଂକ୍ତି ବଡ଼ ଅନାଚାର ।
ନିତ୍ୟାନନ୍ଦ କହେ—ତୁମି ଅଦ୍ୱୈତ ଆଚାର୍ଯ୍ୟ,
ଅଦ୍ୱୈତ ସିଦ୍ଧାନ୍ତେ ବାଧେ ଶୁଦ୍ଧଭକ୍ତି କାର୍ଯ୍ୟ ।
ତୋମାର ସିଦ୍ଧାନ୍ତ ସଙ୍ଗ କରେ ଯେଇ ଜନେ,
ଏକବସ୍ତୁ ବିନା ସେଇ ଦ୍ୱିତୀୟ ନା ମାନେ ।
ହେନ ତୋମାର ସଙ୍ଗେ ମୋର ଏକତ୍ର ଭୋଜନ,
ନା ଜାନି ତୋମାର ସଙ୍ଗେ କୈଛେ ହୟ ମନ ।

ଏହିରୂପ ପ୍ରେମ କଳହ ଶୁଣି ମହାପ୍ରଭୁ ମୃଦୁ ମୃଦୁ ହସୁଅଛନ୍ତି । ଏ ପ୍ରସାଦ ସେବନରେ ଆନନ୍ଦ ସିନ୍ଧୁ ଉଚ୍ଛୁଳି ପଡ଼ୁଅଛି । ଭୋଜନାନ୍ତେ ମହାପ୍ରଭୁ ସମସ୍ତଙ୍କୁ ନିଜ ହସ୍ତରେ ମାଳାଚନ୍ଦନ ପିନ୍ଧାଇଲେ । ଆହା !

ଯାହାଙ୍କୁ ଇନ୍ଦ୍ର,ଚନ୍ଦ୍ର ବ୍ରହ୍ମା ରୁଦ୍ର ମନୋରଞ୍ଜନ ଦେବା ପାଇଁ ଲାଳାୟିତ, ସେ ଆଜି ନିଜେ ଭକ୍ତମାନଙ୍କ ମନୋରଞ୍ଜନ ଚିନ୍ତାରେ ଅଛନ୍ତି ।

ତତ୍ପରେ ରଥଯାତ୍ରା । ସେଥିର ଲୀଳା ମାଧୁରୀ ମନୁଷ୍ୟ ଦୂରେ ଥାଉ, ଦେବତାମାନେ ମଧ୍ୟ ବର୍ଣ୍ଣିବାକୁ ଅକ୍ଷମ । ଶ୍ରୀ ଜଗନ୍ନାଥ ଦେବ ନୀଳାଚଳ ରୂପ ଦ୍ୱାରକା ଛାଡ଼ି ସୁନ୍ଦରାଚଳରୂପ ଶ୍ରୀ ବୃନ୍ଦାବନକୁ ଗମନ କରୁ ଥିବାରୁ ଶ୍ରୀ ରାଧା ଭାବ ବିଭାବିତ ମହାପ୍ରଭୁଙ୍କ ମନ ଜାଣି ଲଳିତା ସ୍ୱରୂପିଣୀ ସ୍ୱରୂପ ଗୋସାଇଁ ସୁମଧୁର ସ୍ୱରରେ ଗାଉଛନ୍ତି ।

ସେଇ ତ ପରାଣ ନାଥ ପାଇଲୁଁ ।
ଯାହା ଲାଗି ମଦନ ଦହନେ ଝୁରିଗେଲୁଁ ।

( ଚୈଃ ମଧ୍ୟ ୧୩ )

ଏହି ଗାନ ଶୁଣି ମହାପ୍ରଭୁ ଶ୍ରୀ ଜଗନ୍ନାଥ ଦେବଙ୍କ ସମ୍ମୁହଁ ସମ୍ମୁହଁ ଅତି ମଧୁର ଭଙ୍ଗୀରେ ନୃତ୍ୟ କରିବାକୁ ଲାଗିଲେ । ମହାପ୍ରଭୁଙ୍କ ଇଚ୍ଛା ଜାଣି ଶ୍ରୀ ନନ୍ଦିଘୋଷ ରଥବର ଅତି ଧୀରେ ଧୀରେ ଚାଲୁଅଛନ୍ତି ଓ ମହାପ୍ରଭୁ ନାନାଭଙ୍ଗୀରେ ନୃତ୍ୟ କରି ଶ୍ରୀ ଜଗନ୍ନାଥଙ୍କ ସମ୍ମୁହଁ ସମ୍ମୁହଁ ପଛେଇ ପଛେଇ ଯାଉଅଛନ୍ତି । ମହାପ୍ରଭୁଙ୍କ ଗତିରୁଦ୍ଧ ହେଲେ ରଥର ଗତି ମଧ୍ୟ ସ୍ଥଗିତ ହୋଇ ଯାଉଛି । ଯଥା —

ଗୌର ଯଦି ଆଗେ ନାଯାନ୍ତି, ଶ୍ୟାମ ହୁଅନ୍ତି ସ୍ଥିରେ ।
ଗୌର ଆଗେ ଚଲେ ଶ୍ୟାମ ଚଲେ ଧୀରେ ଧୀରେ ॥
ଏଇମତ ଗୌର ଶ୍ୟାମ କରେ ଠେଲା ଠେଲି ।
ସରଥ ଶ୍ୟାମେରେ ରାଖେ ଗୌର ମହାବଳୀ ॥

( ଚୈଃ ମଧ୍ୟ ୧୩ )

ନାଚୁ ନାଚୁ ଭାବନିଧି ମହାପ୍ରଭୁଙ୍କର ଭାବାନ୍ତର ଉପସ୍ଥିତ ହେଲା, ସେ ରାଧାଭାବରେ ମାନ କରି "ଯଃକୌମାରହରଃ" ଇତ୍ୟାଦି ଶ୍ଳୋକଟିଏ

ଶ୍ଲୋକ ପାଠ କଲେ । ଏହି ଶ୍ଲୋକର ମର୍ମ ଏକା ସ୍ୱରୂପ ବ୍ୟତୀତ ଅନ୍ୟ କେହି ଜାଣି ନ ଥିଲେ । କିନ୍ତୁ ଶ୍ରୀରୂପ ଗୋସାଇଁ ମହାପ୍ରଭୁଙ୍କର ଅତ୍ୟନ୍ତ କୃପାପାତ୍ର ଥିବାରୁ ସେ କେବଳ ସେ ଶ୍ଲୋକର ଅର୍ଥ ଉପଲବ୍ଧି କରି ମହାପ୍ରଭୁଙ୍କ ଗୂଢ଼ଭାବକୁ ପ୍ରକାଶ କରି ଆଉ ଏକ ଶ୍ଲୋକ ରଚନା କରିଥିଲେ । ଶ୍ରୀଲ କୃଷ୍ଣଦାସ କବିରାଜ ପରେ ସେ ସମସ୍ତ ଜାଣି ଶ୍ରୀଚୈତନ୍ୟ ଚରିତାମୃତରେ ତାହାର ମର୍ମ ବ୍ୟାଖ୍ୟାପୂର୍ବକ ଲେଖି ଅଛନ୍ତି, ଯେ ଶ୍ରୀମତୀ ରାଧା କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣଙ୍କ ଦର୍ଶନ ପାଇ ତାହାଙ୍କର ଯେଉଁ ଭାବ ଉଦୟ ହୋଇଥିଲା, ବର୍ତ୍ତମାନ ମହାପ୍ରଭୁଙ୍କ ମନରେ ସେହି ଭାବ ଉଦୟ ହୋଇଅଛି । ଯଥା—

ଅବଶେଷେ ରାଧା କୃଷ୍ଣେ କୈଲ ନିବେଦନ ।
ସେଇ ତୁମି ସେଇ ଆମି ସେଇ ନବସଙ୍ଗମ ॥
ତଥାପି ଆମାର ମନ ହରେ ବୃନ୍ଦାବନ ।
ବୃନ୍ଦାବନେ ଉଦୟ କରାହ ଆପନା ଚରଣ ॥
ଇହାଁ ଲୋକାରଣ୍ୟ ହାତୀ ଘୋଡ଼ା ରଥଧ୍ୱନ ।
ତାହାଁ ପୁଷ୍ପାରଣ୍ୟ ଭୃଙ୍ଗ ପିକନାଦ ଶୁନ ।
ଇହାଁ ରାଜବେଶ ସବ ସଙ୍ଗେ କ୍ଷତ୍ରିୟଗଣ ।
ତାହାଁ ଗୋପଗଣ ସଙ୍ଗେ ମୁରଲୀବଦନ ॥
ବ୍ରଜେ ତୋମାର ସଙ୍ଗେ ଯେଇ ସୁଖ ଆସ୍ୱାଦନ ।
ସେ ସୁଖସମୁଦ୍ରେର ଇହାଁ ନାହିଁ ଏକ କଣ ।
ଆମା ଲଞା ପୁନ ଲୀଳା କର ବୃନ୍ଦାବନେ ।
ତବେ ଆମାର ମନୋବାଞ୍ଛା ହୟତ ପୂରଣେ ।

(ଚୈଃ ମଧ୍ୟ ୧୩)

ମହାପ୍ରଭୁଙ୍କ ମନ ଅସ୍ଥିର ହେଉଅଛି, ହୃଦଗତଭାବମାନ ପ୍ରାଣନାଥଙ୍କୁ ସମ୍ମୁଖରେ ଦେଖି ଉଚ୍ଛୁଳି ପଡ଼ୁଅଛି । ଏତେବେଳେ ନ କହିବେ ତ ଆଉ କହିବେ କେତେବେଳେ । ତେଣୁ ସେ କହୁଛନ୍ତି;—

ଅନ୍ୟର ହୃଦୟମନ      ଆମାର ମନ ବୃନ୍ଦାବନ
ମନେ ବନେ ଏକ କରି ଜାଣ ।
ତାହିଁ ତୋମାର ପଦଦ୍ୱୟ      କରିହ ଯଦି ଉଦୟ
ତବେ ତୋମାର ପୂର୍ଣ୍ଣ କୃପା ମାନ ॥
ପ୍ରାଣନାଥ ! ଶୁଣ ମୋର ସତ୍ୟ ନିବେଦନ ।
ବ୍ରଜ ଆମାର ସଦନ,      ତାହିଁ ତୋମାର ସଙ୍ଗମ
ନା ପାଇଲେ ନା ରହେ ଜୀବନ ॥
ପୂର୍ବେ ଉଦ୍ଧବ ଦ୍ୱାରେ      ଏବେ ସାକ୍ଷାତ୍ ଆମାରେ
ଯୋଗ ଜ୍ଞାନେର କହିଲେ ଉପାୟ ।
ତୁମି ବିଦଗ୍ଧ କୃପାମୟ      ଜାନ ଆମାର ହୃଦୟ
ମୋରେ ଐଛେ କହିତେ ନା ଯୁୟାୟ ॥
ଚିତ୍ତ କାଢ଼ି ତୋମା ହୈତେ      ବିଷୟେ ଚାହିଲାଗାଇତେ
ଯତ୍ନ କରି ନାରି କାଢ଼ିବାରେ ।
ତାରେ ଧ୍ୟାନ ଶିକ୍ଷାକର      ଲୋକ ହାସାଇୟା ମାର
ସ୍ଥାନାସ୍ଥାନ ନା କର ବିଚାର ॥
ନହେ ଗୋପୀ ଯୋଗେଶ୍ୱର      ତୋମାର ପଦକମଲ
ଧ୍ୟାନ କରି ପାଇବେ ସନ୍ତୋଷ ।
ତୋମାର ବାକ୍ୟ ପରିପାଟି      ତାର ମଧ୍ୟେ କୁଟିନାଟି
ଶୁଣି ଗୋପୀର ବାଢ଼େ ଆର ରୋଷ ॥
ଦେହ ସ୍ମୃତି ନାହିଁ ଯାର      ସଂସାରକୂପ କାହାଁ ତାର
ତାହା ହୈତେ ନା ଚାହେ ଉଦ୍ଧାର ।
ବିରହସମୁଦ୍ର ଜଲେ      କାମ ତିମିଙ୍ଗିଲେ ଗିଲେ
ଗୋପୀଗଣେ ଲହ ତାର ପାର ॥
ବୃନ୍ଦାବନ ଗୋବର୍ଦ୍ଧନ      ଯମୁନାପୁଲିନ ବନ
ସେଇ କୁଞ୍ଜେ ରାସାଦିକ ଲୀଳା ।

ସେଇ ବ୍ରଜ ବ୍ରଜଜନ ମାତା ପିତା ବନ୍ଧୁଗଣ
କେହ୍ନେ ଭଳି କେମନ୍ତେ ପାସରିଲ ।
ଉଦାର୍ଥ ମୃଦୁ ସଦ୍‌ଗୁଣ ସୁଶୀଲ ମୁଗ୍ଧ କରୁଣ
ତୁମି, ତୋମାର ନାହିଁ ଦୋଷାଭାସ ।
ତବେ ଯେ ତୋମାର ମନ ନାହିଁ ସ୍ମରେ ବ୍ରଜଜନ
ସେ ଆମାର ଦୁର୍ଦ୍ଦୈବ ବିଳାସ ॥
ନ ଗଣି ଆପନ ଦୁଃଖ, ଦେଖି ବ୍ରଜେଶ୍ୱରୀ ମୁଖ
ବ୍ରଜ ଜନେର ହୃଦୟ ବିଦରେ,
ଉଭା ମାର ବ୍ରଜବାସୀ, ଜୀବା ଜୟୁ ଓ ବ୍ରଜଆଧି
କେନେ ଜୀୟାଓ ଦୁଃଖ ସହିବାରେ ॥
ତୋମାର ଯେ ଅଭିପ୍ରେତ, ଅନ୍ୟ ସଙ୍ଗ ଅନ୍ୟ ଦେଶ
ବ୍ରଜ ଜନେ କଭୁ ନାହିଁ ଭୟ ।
ବ୍ରଜଭୂମି ଛାଡିତେ ନାରେ, ତୋମା ନା ଦେଖିଲେ ମରେ
ବ୍ରଜ ଜନେର କି ହବେ ଉପାୟ ॥
ତୁମି ବ୍ରଜେର ଜୀବନ, ତୁମି ବ୍ରଜେର ପ୍ରାଣଧନ
ତୁମି ବ୍ରଜେର ସକଲ ସମ୍ପଦ ।
କୃପାର୍ଦ୍ର ତୋମାର ମନ ଆସି ଜୀୟାଓ ବ୍ରଜଜନ
ବ୍ରଜେ ଉଦୟ କରାଅ ନିଜପଦ ॥

ନିଜପ୍ରାଣ ଅପେକ୍ଷା ଅଧିକ ପ୍ରିୟବତୀ ଶ୍ରୀ ରାଧିକାଙ୍କର ଏହି ମର୍ମସ୍ପର୍ଶୀ ଉକ୍ତିରେ ଶ୍ରୀ ଜଗନ୍ନାଥ ଦେବଙ୍କର ହୃଦୟ ଯେ କେତେ ଦୂର ବିଦୀର୍ଣ୍ଣ ହୋଇ ଯାଉଥିଲା ତାହା ସେ ଜାଣନ୍ତି ଓ ମୋ ନେତ୍ର ଇଙ୍ଗିତ ଦ୍ୱାରା ଅବଶ୍ୟ ମହାଭାବମୟୀ ଶ୍ରୀ ଗୌରାଙ୍ଗଦେବଙ୍କୁ ସମୁଚିତ ସାନ୍ତ୍ୱନ ବାକ୍ୟ ପ୍ରୟୋଗ କରୁଥିଲେ । ଏହି ସମୟରେ ଧୀରେ ଧୀରେ ରଥ ଗୁଳୁ ଗୁଳୁ ରଥର ଗତି ଏକବାରେ ସ୍ଥଗିତ ହୋଇଗଲା । ମହାରାଜା ବ୍ୟସ୍ତ ହୋଇ ସମସ୍ତ ମନୁଷ୍ୟବଳ ଓ ପ୍ରେରେ ଗଜମାନଙ୍କୁ ଅଣାଇ ରଥ ଟଣାଇଲେ,

କିନ୍ତୁ ରଥ ଅଟକିଲା । ତାହା ଦେଖି ମହାପ୍ରଭୁ ଭକ୍ତମାନଙ୍କୁ ଆଗରୁ ବାହାର କରାଇ ଦେଲେ ଓ ନିଜ ପାର୍ଷଦଗଣଙ୍କୁ ରଥ ଡୋରି ଟାଣିବାକୁ ଆଦେଶ କଲେ ଏବଂ ନିଜେ ରଥର ପଶ୍ଚାତ୍‌ଭାଗକୁ ଯାଇ ମସ୍ତକ ଲଗାଇ ଠେଲିବାକୁ ଲାଗିଲେ । ରଥ ସେତେବେଳେ ହଡ଼ ହଡ଼ କରି ଚଳିବାକୁ ଲାଗିଲା । ଏହିରୂପେ ରଥଟଣା ସମାପନ କରାଇ ନବଦିନ ପର୍ଯ୍ୟନ୍ତ ଶ୍ରୀ ଜଗନ୍ନାଥ ଦେବଙ୍କୁ ଗୁଣ୍ଡିଚା ମନ୍ଦିରରେ ପାଇ ମହାପ୍ରଭୁ ଅତୀବ ଆନନ୍ଦ ଲାଭ କଲେ ଓ ସେହି କେତେଦିନ ଅଧିକାଂଶ ସମୟ ଶ୍ରୀ ରାଧାକୃଷ୍ଣଙ୍କର ମଥୁରା ବିରହ ପରେ ମିଳନରେ ଯେଉଁ ଭଳି ଆନନ୍ଦ ହୋଇଥିଲା, ତଦ୍‌ସୂଚକ ଗାନମାନ ସ୍ୱରୂପାଦି ନିଜ ଜନଙ୍କ ଦ୍ୱାରା କୀର୍ତ୍ତନ କରାଇ ନିଜେ ତାହା ଆସ୍ୱାଦନ କରିବାକୁ ଲାଗିଲେ । ମହାପ୍ରଭୁଙ୍କ ନୟନରୁ ଆନନ୍ଦାଶ୍ରୁ ବହି ଯାଉଥାଏ ଓ ସେ ଶ୍ରୀ ଜଗନ୍ନାଥ ଦେବଙ୍କ ବଦନକମଳକୁ ଚାହିଁ ଚାହିଁ କିଛି ଯେପରି କହୁଅଛନ୍ତି ଏହିଭଳି ସତତ ଜଣା ପଡୁଥାଏ । କେତେବେଳେ ମହାପ୍ରଭୁ ନିଜେ କିଛି ଗାଇବାକୁ ଆରମ୍ଭ କଲେ, ସ୍ୱରୂପାଦି ପାଳି ଧରନ୍ତି ଓ ବକ୍ରେଶ୍ୱର ପଣ୍ଡିତ ଖୋଳ ବଜାନ୍ତି । ଏହିପରି ଆନନ୍ଦରେ ତିନି ଚାରିଦିନ ଯିବା ପରେ ହୋରା-ପଞ୍ଚମୀ ପଡ଼ିଲା । ସେଦିନ ଶ୍ରୀଲକ୍ଷ୍ମୀ ଠାକୁରାଣୀଙ୍କର ବିଜୟୋତ୍ସବ । ମହାପ୍ରଭୁ ସେଦିନ ଶ୍ରୀଲକ୍ଷ୍ମୀଠାକୁରାଣୀଙ୍କର ଅଭିନବଭଙ୍ଗୀରେ ମାନ ଦର୍ଶନ କରି ଶ୍ରୀରାଧା ଠାକୁରାଣୀଙ୍କର ମାନର ସହିତ ଏ ମାନର ତୁଳନାପୂର୍ବକ କହିଲେ, ଏତ ଅତି ଏକ ଅଭିନବ ମାନ, ମାନିନୀ ପରେ ବିମର୍ଷଭାବରେ ଭୂମି ମଧ୍ୟରେ ଗାର କାଟନ୍ତି, ଫୁଲହାର ବା ଅଳଙ୍କାର ପିନ୍ଧନ୍ତି ନାହିଁ । କିନ୍ତୁ ଏ ରତ୍ନଖଚିତ ସୁବର୍ଣ୍ଣ ଚୌଦୋଳାରେ ବସି ଛତ୍ର ଚାମର ପତାକାଦି ସହ ବେଶ ବିଭୂଷିତା ଦାସୀମାନଙ୍କୁ ସେନା ଗଠନ କରୁଛନ୍ତି ଓ ଶ୍ରୀ ଜଗନ୍ନାଥଙ୍କ ସିଂହ-ଦ୍ୱାରକୁ ଯାଇ ଏହାଙ୍କର ପ୍ରଗଲ୍‌ଭଦାସିମାନେ ଶ୍ରୀଜଗନ୍ନାଥ ଦେବଙ୍କ ମୁଖ୍ୟ ମୁଖ୍ୟ ସେବକମାନଙ୍କୁ ବାନ୍ଧି ଶ୍ରୀଲକ୍ଷ୍ମୀ ଠାକୁରାଣୀଙ୍କ ସମ୍ମୁଖକୁ ଆଣି ନାନା ଭଣ୍ଡ ବଚନରେ ଭର୍ତ୍ସନା କରୁଅଛନ୍ତି ଓ ଅଚେତନ ରଥ ପ୍ରତି ତାଡ଼ନ କରୁଅଛନ୍ତି । ମହାପ୍ରଭୁ ଏମାନ ଦେଖି ହସି ହସି ସ୍ୱରୂପଗୋସାଇଁଙ୍କୁ କହିଲେ

ସ୍ୱରୂପ ! ତୁମ୍ଭ ଠାକୁରାଣୀଙ୍କର ମାନ କିଛି ବର୍ଣ୍ଣନ କର । ତହୁଁ ଶ୍ରୀଲ ସ୍ୱରୂପ ଗୋସାଇଁ ନିଜ ପ୍ରିୟସଖୀ ଶ୍ରୀରାଧାଙ୍କର ମାନ ବର୍ଣ୍ଣନ କରିବାକୁ ଲାଗିଲେ । ତହିଁରେ ନାରଦସ୍ୱଭାବ ଶ୍ରୀବାସ ହସିକରି କହିଲେ "ତୁମ୍ଭର ଠାକୁରାଣୀ ଦୁଧ ଆଉଟନ୍ତି ଓ ଦଧି ମନ୍ଥନ କରନ୍ତି, ଫୁଲ ପଣ ଗିରିଥାନ୍ତି ତାଙ୍କର ଅଙ୍ଗର ଆଭୂଷଣ, ଆମ୍ଭ ଠାକୁରାଣୀ ଶ୍ରୀଲକ୍ଷ୍ମୀଦେବୀ ନାନା ବହୁମୂଲ୍ୟ ରତ୍ନରେ ଶ୍ରୀଅଙ୍ଗ ବିଭୂଷିତ କରି ରତ୍ନସିଂହାସନରେ ଉପବେଶନ କରନ୍ତି ଓ ଦାସୀ-ମାନେ ଛତ୍ର ଚାମରଦ୍ୱାରା ତାହାଙ୍କର ସେବା କରନ୍ତି ।" ଶ୍ରୀବାସଙ୍କର ଏହି କଥା ଶୁଣି ସ୍ୱରୂପ ଗୋସାଇଁ ଗର୍ବାନ୍ୱିତ ହୋଇ କହିଲେ, "ପଣ୍ଡିତ ! ସାବଧାନ ହୋଇ କଥା କୁହ, ତୁମ୍ଭେ ତ ଶ୍ରୀ ବୃନ୍ଦାବନ ବହୁବାର ଦେଖିଅଛ, ତୁମ୍ଭର କି ସେ ସ୍ଥାନର ସମ୍ପତ୍ତିମାନ ମନେ ପଡୁନାହିଁ" ।—

ସ୍ୱରୂପ କହେନ, ଶ୍ରୀବାସ ! ଶୁନ ସାବଧାନେ
ବୃନ୍ଦାବନ ସମ୍ପଦ୍ ତୋମାର ନାହି ପଡ଼େ ମନେ ।
ବୃନ୍ଦାବନେ ସାହଜିକ ଯେ ସମ୍ପଦ ସିନ୍ଧୁ
ଦ୍ୱାରକା-ବୈକୁଣ୍ଠ-ସମ୍ପଦ୍ ତାର ଏକ ବିନ୍ଦୁ ।
ପରମ ପୁରୁଷୋତ୍ତମ ସ୍ୱୟଂ ଭଗବାନ
କୃଷ୍ଣ ଯାହାଁ ଧନୀ ତାହାଁ ବୃନ୍ଦାବନ ଧାମ ।
ଚିନ୍ତାମଣିମୟ ଭୂମି, ରତ୍ନେର ଭବନ
ଚିନ୍ତାମଣିଗଣ ଦାସୀ ଚରଣ ଭୂଷଣ ।
କଳ୍ପବୃକ୍ଷଲତା ଯାହାଁ ସାହାଜିକ ବନ
ପୁଷ୍ପ ଫଳ ବିନା କେହୋ ନା ମାଗେ ଅନ୍ୟ ଧନ ।
ଅନନ୍ତ କାମଧେନୁ ଯାହାଁ ଚରେ ବନେ ବନେ
ଦୁଗ୍ଧମାତ୍ର ଦେନ, କେହୋ ନା ମାଗେ ଅନ୍ୟ ଧନେ ।
ସହଜ ଲୋକେର କଥା ଯାହାଁ ଦିବ୍ୟଗୀତ
ସହଜ ଗମନ କରେ ନୃତ୍ୟ ପ୍ରତୀତ ।

ସର୍ବତ୍ର ଜଳ ଯାହାଁ ଅମୃତ ସମାନ
ଚିଦାନନ୍ଦ ଜ୍ୟୋତିଃ ସ୍ୱାଦ ଯାହାଁ ମୂର୍ତ୍ତିମାନ ।
ଲକ୍ଷ୍ମୀ ଜିନ ଗୁଣ ଯାହାଁ ଲକ୍ଷ୍ମୀର ସମାଜ
କୃଷ୍ଣ ବଂଶୀ କରେ ଯାହାଁ ପ୍ରିୟସଖୀ କାଜ ।

(ଚୈ—ମଧ—୧୪)

ଏହା ଶୁଣି ଶ୍ରୀବାସ ଆନନ୍ଦରେ କରତାଳି ବଜାଇ ଅଟ୍ଟହାସ୍ୟ କରି-ବାକୁ ଲାଗିଲେ । ମହାପ୍ରଭୁ ଯେଉଁ ପ୍ରେମକଳହ ଶୁଣିବାପାଇଁ ଏ ପ୍ରସଙ୍ଗ ଉଠାଇ ଥିଲେ, ତାହା ଶୁଣି ପ୍ରେମରେ ଅଧୀର ହୋଇ ସ୍ୱରୂପଙ୍କୁ ସେହି ରସରେ ଗୀତଗାଇବାକୁ ଇଙ୍ଗିତ କଲେ ଓ ସେ ଗାଆନ୍ତେ ନିଜେ ଅତି ମଧୁର-ଭାବରେ ନୃତ୍ୟ କରିବାକୁ ଲାଗିଲେ । ଯଥା—

ବ୍ରଜରସ ଗୀତ ଶୁନି ପ୍ରେମ ଉଥଲିଲ
ପୁରୁଷୋତ୍ତମ ଗ୍ରାମ ପ୍ରଭୁ ପ୍ରେମେ ଭାସାଇଲ ।

(ଚୈ—ମଧ୍ୟ—୧୭)

ଏହି ରଥଉତ୍ସବ ସମୟରେ ପ୍ରାୟ ପ୍ରତି ବର୍ଷ ମହାପ୍ରଭୁଙ୍କର ଗୌଡ଼ସ୍ଥ ପ୍ରିୟ ସେବକମାନେ ଆସି ଥାଆନ୍ତି । ଅତଏବ ଗୌଡ଼ ଓ ଉତ୍କଳ ଉଭୟ ସ୍ଥାନର ଭକ୍ତମାନଙ୍କୁ ଘେନି ମହାପ୍ରଭୁ ଅପାର ଆନନ୍ଦ ଲାଭ କରନ୍ତି ।

ବର୍ଷାଋତୁ ଆଗମନରେ ଲୋକେ ବର୍ଷାହେତୁ ବାହାରକୁ ବେଶି ବାହାରିପାରନ୍ତି ନାହିଁ, କିନ୍ତୁ ବର୍ଷାକାଳର ଉପଯୋଗୀ ଝୁଲଣ ଲୀଳା ଉପସ୍ଥିତ । ଶ୍ରୀ ମଦନମୋହନଜୀଉ ନାନା କୁସୁମ ବିମଣ୍ଡିତ ଚାରୁ ଝୁଲଣ ବିମାନରେ ଝୁଲୁ ଅଛନ୍ତି ଓ ମହାପ୍ରଭୁ ନିଜ ପରିକରମାନଙ୍କ ସଙ୍ଗେ ଝୁଲଣ ପଦମାନ ଆସ୍ୱାଦନ କରୁଅଛନ୍ତି । ସ୍ୱରୂପ ଗୋସାଇଁ ଅତି ସୁମଧୁର ଲହରରେ ତାନ ଉଠାଇ ଗାନ କରୁଅଛନ୍ତି ଓ ସେ ମଧୁର ପଦାବଳୀ ଶୁଣି ମହାପ୍ରଭୁଙ୍କ ନୟନ ଦ୍ୱୟରୁ ବର୍ଷାକାଳୀନ ବାରିଧାରା ପରି ଧାର ବହି ଯାଉଅଛି । ତତ୍ପରେ

ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ; ଶ୍ରୀ ନନ୍ଦୋତ୍ସବ ଦିବସ, ମହାପ୍ରଭୁ ସେ ଉତ୍ସବଟିକୁ ଜୀବନ୍ତ ଭାବ ସମ୍ପାଦନ କଲେ । ଶ୍ରୀ କନେଇ ଖୁଣ୍ଟିଆ ଶ୍ରୀନନ୍ଦମହାରାଜ ସାଜିଲେ ଓ ଶ୍ରୀ ଜଗନ୍ନାଥ ମହାନ୍ତି ଶ୍ରୀ ଯଶୋଦା ସାଜିଲେ । ମହାରାଜା ପ୍ରତାପରୁଦ୍ର ଶ୍ରୀଳ କାଶୀମିଶ୍ର ଓ ଶ୍ରୀଳ ସାର୍ବଭୌମଙ୍କ ସଙ୍ଗେ ଘେନ ସେ ଉତ୍ସବରେ ଅପି ଯୋଗଦେଲେ । ଦଧି, ଦୁଗ୍ଧ ଓ ହରିଦ୍ରା ମିଶ୍ରିତ ଜଳ ତରଙ୍ଗରେ ଭିଜା ଭିଜି ହୋଇ ସମସ୍ତଙ୍କ ବସନ ଓ ଅଙ୍ଗ ଭିଜିଗଲା । ଆଜିକାଲି ମଧ୍ୟ ଭାରତର ପ୍ରସିଦ୍ଧ କୀର୍ତ୍ତନୀୟା ଶ୍ରୀ ରାମଦାସ ବାବାଜୀ ନିଜ ଦଳ ଘେନ ଗୁଣ୍ଡିଚାମାର୍ଜ୍ଜନ ଓ ରଥଯାତ୍ରାଦି ସମୟରେ ଯେ ମନୋମୁଗ୍ଧକର କୀର୍ତ୍ତନ କରନ୍ତି ତାହା ଦେଖି ସନ୍ତ ମନେହୁଏ, ମହାପ୍ରଭୁଙ୍କ ପ୍ରକଟକାଳରେ ଏ କୀର୍ତ୍ତନ କି ମନୋହର ହେଉ ନ ଥିବ । ଏବଂ ଆଜିକାଲି ସେ କୀର୍ତ୍ତନ ବେଶ୍ ଦେଖି ଅନୁଭବ ମନେହୁଏ, ମହାପ୍ରଭୁ ପ୍ରକଟରେ ଦଳସହ କୀର୍ତ୍ତନ-କରୁ ନ ଥିଲେହେଁ, ନିଜକଳେବରର ଅଲକ୍ଷ୍ୟ ଭାବରେ ରହି ଏ କୀର୍ତ୍ତନ ଦର୍ଶନ କରୁଅଛନ୍ତି ଓ ତାହାଙ୍କର ଉପସ୍ଥିତି ହେତୁ ଏ ଆଧୁନିକ କୀର୍ତ୍ତନ ମଧ୍ୟ ଏତେ ମନୋମୁଗ୍ଧକର ହୋଇ ଉଠୁଅଛି ।

ଶ୍ରୀଳ ଅଦ୍ୱୈତ ପ୍ରଭୁ ମହାପ୍ରଭୁଙ୍କୁ ସମ୍ବୋଧନ ପୂର୍ବକ କହିଲେ, ତୁମ୍ଭେ ଲଗୁଡ଼ ଫେରାଇଲେ ସିନା ତୁମ୍ଭ ଗଉଡ଼ ପଣିଆ ଜଣାଯିବ । ଏହି ନର୍ମୋକ୍ତି ଶୁଣି ମହାପ୍ରଭୁ ଓ ପ୍ରଭୁ ଶ୍ରୀ ନିତ୍ୟାନନ୍ଦ ଏପରି ସୁନ୍ଦର ଭାବରେ ଲଗୁଡ଼ ଫେରାଇଲେ ଯେ ଦର୍ଶକବୃନ୍ଦ ଚମତ୍କୃତ ହେଲେ । ଶ୍ରୀ କନେଇ ଖୁଣ୍ଟିଆ ଓ ଶ୍ରୀ ଜଗନ୍ନାଥ ମହାନ୍ତି ଅବଶେଷରେ ନିଜ ନିଜ ଘରୁ ବହୁଧନ ବ୍ରାହ୍ମଣ ଓ କାଙ୍ଗାଳମାନଙ୍କୁ ବିତରଣ କଲେ । ମହାପ୍ରଭୁ ସେ ଦୁହିଁଙ୍କୁ ପିତାମାତା ଜ୍ଞାନରେ ପ୍ରଣାମ କଲେ । ଯଥା—

କାନାଇଁ ଖୁଣ୍ଟିଆ ଜଗନ୍ନାଥ ଦୁଇଜନ,
ଅବେଶେ ବିଲାଇଲ ଘରେ ଛିଲ ଯତଧନ ।
ଦେଖି ମହାପ୍ରଭୁ ବଡ଼ ସନ୍ତୋଷ ପାଇଲ,
ପିତାମାତା ଜ୍ଞାନେ ଦୋଁହାଙ୍କୁ ନମସ୍କାର କୈଲ ( ଚୈଃ ମଧ୍ୟ ୧୫ )

ବିଜୟାଦଶମୀ ଦିନ ମହାପ୍ରଭୁ ହନୁମାନ ବେଶରେ ବୃକ୍ଷଶାଖା ଭାଙ୍ଗି "କାହିଁରେ ରାବଣା" ବୋଲି ହୁଁକାର କରି ଦଉଡ଼ିବାକୁ ଲାଗିଲେ । ଏବଂ ସେହିରୂପେ ଗୋପଲୀଳା, ରାସ, ଦୋଳଯାତ୍ରା ଶ୍ରୀକୃଷ୍ଣ ଯାତ୍ରାମାନ ମହାପ୍ରଭୁ ଅତି ସମାରୋହରେ ସମ୍ପନ୍ନ କରାଇଲେ । ଶ୍ରୀ ଜଗନ୍ନାଥ ଦେବଙ୍କର ଚନ୍ଦନ-ଯାତ୍ରା ସମୟରେ ମହାପ୍ରଭୁ ନିଜ ପରିକରମାନଙ୍କ ସଙ୍ଗେ ଶ୍ରୀ ମଦନମୋହନ ଛାମୁଙ୍କ ଆଗେ ଆଗେ କୀର୍ତ୍ତନ କରି କରି ନରେନ୍ଦ୍ରସରୋବରର ତୀରରେ ଉପସ୍ଥିତ ହୁଅନ୍ତି ଓ ଶ୍ରୀ ମଦନମୋହନ ନୌକାରେ ବିହାର କରିବା ସମୟରେ ମହାପ୍ରଭୁ ପରିକରଙ୍କ ସଙ୍ଗେ ନରେନ୍ଦ୍ର ଜଳରେ ପ୍ରବେଶକରି ଅପୂର୍ବ ଜଳକ୍ରୀଡ଼ା ସମ୍ପାଦନ କରନ୍ତି । ରାତ୍ରରେ ପୁଣି କେତେଦିନ ନରେନ୍ଦ୍ରତୀରରେ ଓ କେତେଦିନ ବା ନଉକା ଉପରେ ଚନ୍ଦନୋଚିତପଦମାନ କୀର୍ତ୍ତନ କରି ଶ୍ରୀ ମଦନମୋହନଙ୍କୁ ବିମୁଗ୍ଧ କରନ୍ତି । ଏହିରୂପେ ସେ ଶେଷ ୧୮ ବର୍ଷ ମହାପ୍ରଭୁ ଶ୍ରୀ ପୁରୁଷୋତ୍ତମରେ ଯେ ଅପୂର୍ବ ଲୀଳା ବିସ୍ତାର କରିଥିଲେ ତାହା ବୈକୁଣ୍ଠରେ ମଧ୍ୟ ସମ୍ଭବପର ନୁହେଁ । ଯେଉଁମାନେ ସୁସୌଭାଗ୍ୟକ୍ରମେ ସେ ଲୀଳାମାନ ଦର୍ଶନ କରିଥିଲେ ସେହିମାନେହିଁ ତାହାର ଅପୂର୍ବ ମାଧୁରୀ କହି ପାରିବେ । ଅପର ତାହା ଜାଣିବ କିପରି । ଏହିରୂପେ ଉତ୍ସବମାନ ମହା ସମାରୋହରେ ସମ୍ପାଦନ ପୂର୍ବକ ନିଜେ ଆସ୍ୱାଦନ କରି ଆଦର୍ଶ ପ୍ରଦର୍ଶନ ଦ୍ୱାରା ଲୋକମାନଙ୍କୁ ଶିକ୍ଷା ଦେଇଥିଲେ ।

ମହାପ୍ରଭୁ ଯେ କେବଳ ଏହିରୂପେ ଆଦର୍ଶଦ୍ୱାରା ଶିକ୍ଷା ଦେଇଥିଲେ, ଏମନ୍ତ ନୁହେଁ, ପ୍ରତ୍ୟକ୍ଷରେ ନାନା ଉପଦେଶ ଦ୍ୱାରା ମଧ୍ୟ ଶିକ୍ଷା ଦେଇଥିଲେ । କୁଳୀନ ଗ୍ରାମବାସୀ ଶ୍ରୀଲରାମାନନ୍ଦ ପୁରୀଠାରେ ମହାପ୍ରଭୁଙ୍କୁ ପଚାରିଲେ, "ପ୍ରଭୋ, ମୋର କି କର୍ତ୍ତବ୍ୟ ଶ୍ରୀମୁଖରେ ଆଜ୍ଞା କରନ୍ତୁ ।" ମହାପ୍ରଭୁ କହିଲେ "ରାମାନନ୍ଦ ! ତୁମ୍ଭେ ହରିନାମ ସଙ୍କୀର୍ତ୍ତନ କର ଓ ବୈଷ୍ଣବ ମାନଙ୍କର ସେବାକର ।" ରାମାନନ୍ଦ ପଚାରିଲେ "ପ୍ରଭୋ ! ଆମ୍ଭେମାନେ ବୈଷ୍ଣବ ଚିହ୍ନିବୁଁ କିପରି ?" ମହାପ୍ରଭୁ କହିଲେ, ଯେଉଁମାନେ ଶ୍ରୀ ହରିନାମ ଗ୍ରହଣ

କରନ୍ତି ସେମାନେହିଁ ବୈଷ୍ଣବ, ଯେଉଁମାନେ ନିରନ୍ତର ଶ୍ରୀ ହରିନାମ ଗ୍ରହଣ କରନ୍ତି ସେମାନେ ଉତ୍ତମ ବୈଷ୍ଣବ ମଧ୍ୟରେ ଗଣ୍ୟ ଓ ଯେଉଁମାନଙ୍କୁ ଦର୍ଶନ କଲେ ଅପରର ମୁଖରୁ ଶ୍ରୀ କୃଷ୍ଣନାମ ବହିର୍ଗତ ହୁଏ, ସେମାନେ ସର୍ବୋତ୍କୃଷ୍ଟ ବୈଷ୍ଣବ ।

ତହିଁ ମହାପ୍ରଭୁ ଠାକୁର ଶ୍ରୀ ହରିଦାସଙ୍କୁ ଛଳକରି ପଚାରିଲେ, "ହରିଦାସ ! ଏ କଳିକାଳରେ ମନୁଷ୍ୟମାନେ ମାୟାର ବିମୋହିନୀ ଶକ୍ତିରେ ସତତ ମୁଗ୍ଧ, ପୁଣି ଗୋବ୍ରାହ୍ମଣ ହିଂସାକାରୀ ଯବନମାନଙ୍କର ସଂଖ୍ୟା ଅତି ଅଧିକ, ଏମାନଙ୍କର ନିସ୍ତାରର ଉପାୟ କି ?" ହରିଦାସ କହିଲେ, "ପ୍ରଭୋ ! ଆପଣ ସେମାନଙ୍କ ପାଇଁ ଚିନ୍ତା କରୁଅଛନ୍ତି କିପାଇଁ । ଏହି ଯେ ଉଚ୍ଚ ହରି-ନାମ ଗ୍ରହଣ ଆପଣ ପ୍ରବର୍ତ୍ତନ କରିଅଛନ୍ତି, ସେହି ନାମ ଶ୍ରବଣରେ ଯବନ-ମାନେ ଉଦ୍ଧାର ପାଇବେ, ଓ ସେମାନେ ଯେ ହାରାମ ଶବ୍ଦ ଉଚ୍ଚାରଣ କରନ୍ତି ତାହା ହା ରାମ ଏହିରୂପ ଅର୍ଥରେ ନାମାଭାସର କାର୍ଯ୍ୟ କରେ ଓ ସେହି ନାମାଭାସରେ ସେମାନଙ୍କର ପାପ କ୍ଷୟ ହୁଏ ଓ ସେମାନେ ମୁକ୍ତିଲାଭ କରନ୍ତି । ଶ୍ରୀମଦ୍ ଭାଗବତରେ ଏହାର ପ୍ରମାଣ ରହିଅଛି, ଯଥା—

ମ୍ରିୟମାଣୋ ହରେର୍ନାମ ଗୃଣନ୍ ପୁତ୍ରୋପଚାରିତଂ
ଅଜାମିଳୋଽପ୍ୟଗାଦ୍ଧାମ କିମୁତ ଶ୍ରଦ୍ଧୟା ଗୃଣନ୍

( ଚୈଃ ଅନ୍ତ୍ୟ ୩ ପଃ )

ଏହି ରୂପ ନାମ ମହିମା ପ୍ରେମ ଗଦ୍‌ଗଦ୍‌ସ୍ୱରରେ କୀର୍ତ୍ତନପୂର୍ବକ ଶ୍ରୀହରିଦାସ ମହାପ୍ରଭୁଙ୍କୁ କହିଲେ "ପ୍ରଭୋ ! ଆପଣ ଯେ ହରି ନାମର ହାଟ ବସାଇ ଛନ୍ତି, ସେଥିରେ ସକଳ ଜୀବମାନେ ଅକ୍ଳେଶରେ ଅମୂଲ୍ୟ ନାମ ପ୍ରେମ ଲାଭ କରି କୃତାର୍ଥ ହୋଇଅଛନ୍ତି । ଯଥା—

ଅବତରି ଏବେ ତୁମି ପାତିୟାଛ ହାଟ
କେହ ନାହିଁ ବୁଝେ ତୋମାର ଏଇ ଗୂଢ଼ ନାଟ ।

(ଚୈ—ଅନ୍ତ୍ୟ—୩)

ଆପଣଙ୍କ ମହିମା ଅପାର ଓ ଅନନ୍ତ ଅମୃତମୟ ସାଗର । ମୁଁ ତନ୍ମଧ୍ୟରୁ ଏକବିନ୍ଦୁ ମାତ୍ର ସ୍ପର୍ଶ କରି ନାହିଁ । ଯଥା—

ତୋମାର ମହିମାନନ୍ତାମୃତାପାର ସିନ୍ଧୁ,
ମୋର ବାଙ୍ମନୋଗୋଚର ନହେ ତାର ଏକବିନ୍ଦୁ ।
(ଚୈ ଅନ୍ତ୍ୟ—୩)

ଏହିରୂପେ ଶ୍ରୀ ହରିଦାସଙ୍କ ମୁଖରୁ ଶ୍ରୀହରିନାମର ମହିମା ପ୍ରକାଶ କରାଇ ମହାପ୍ରଭୁ ଲୋକମାନଙ୍କୁ ଶିକ୍ଷାଦେଇ ଯାଇଅଛନ୍ତି ।

ଶ୍ରୀଲ ରଘୁନାଥ ଦାସ ସପ୍ତଗ୍ରାମର ଜମିଦାର ଶ୍ରୀ ଗୋବର୍ଦ୍ଧନ ଦାସଙ୍କର ପୁତ୍ର । ସେ ଯୌବନ କାଳରେ ପରମାସୁନ୍ଦରୀ ଭାର୍ଯ୍ୟା ଓ ୨୦ ଲକ୍ଷ ଟଙ୍କା ଆୟର ଜମିଦାରୀର ଲୋଭ ପରିତ୍ୟାଗ କରି ପୁରୀକୁ ଆସି ସନ୍ନ୍ୟାସ ଗ୍ରହଣ ପୂର୍ବକ ମହାପ୍ରଭୁଙ୍କର ଶ୍ରୀପାଦକମଳରେ ଆଶ୍ରୟ ନେଲେ । ସେ ବୈରାଗ୍ୟର ପ୍ରଧାନ ଆଦର୍ଶ ହୋଇଥିଲେ ଓ ପିତୃ ପ୍ରେରିତ ଅର୍ଥରୁ କପର୍ଦ୍ଦକ ବ୍ୟୟ ନ କରି ଶ୍ରୀ ଜଗନ୍ନାଥ ଦେଉଳ ବେଢ଼ା ବାହାରେ ସେଜନାତ୍ରଅରୁ ଗୋରୁମାନେ ଚେଇଁଖାଇ ଛାଡି ଯାଉଥିବା ବାସି ପଚାଅନ୍ନ ସଂଗ୍ରହ ପୂର୍ବକ ତାହା ଧୋଇ ଲବଣ ସହ ଆହାର କରୁଥିଲେ । ସେହି ରଘୁନାଥ ଦାସ ସ୍ୱରୂପ ଗୋସାଇଁଙ୍କଦ୍ୱାରା ନିଜର କର୍ତ୍ତବ୍ୟ ମହାପ୍ରଭୁଙ୍କୁ ପଚାରନ୍ତେ, ମହାପ୍ରଭୁ କହିଲେ, "ମୁଁ ତ ତୁମ୍ଭକୁ ସ୍ୱରୂପଙ୍କରେ ସମର୍ପଣ କରିଅଛି । ସାଧ୍ୟ ସାଧନ ତତ୍ତ୍ୱ ସେ ଯେଉଁରୂପ ଜାଣନ୍ତି ମୁଁ ମଧ୍ୟ ସେରୂପ ଜାଣେନାହିଁ । ତେବେ ମୋ ପାଖରୁ ଯଦି କିଛି ଶୁଣିବାକୁ ଇଚ୍ଛା କର, ମୁଁ ସଂକ୍ଷେପରେ କହୁଅଛି ଶୁଣ —

ଗ୍ରାମ୍ୟ କଥା ନା ଶୁନିବେ, ଗ୍ରାମ୍ୟ ବାର୍ତ୍ତା ନା କହିବେ,
ଭାଲ ନା ଖାଇବେ, ଆର ଭାଲ ନା ପରିବେ ।

ଅମାନୀ ମାନଦ କୃଷ୍ଣ ନାମ ସଦା ଲବେ,
ବ୍ରଜେ ରାଧାକୃଷ୍ଣ ସେବା ମାନସେ କରିବେ ।

(ଚୈଃ ଅନ୍ତ୍ୟ—୬)

ଏହି ଗ୍ରନ୍ଥ ମଧ୍ୟରେ ବୈଷ୍ଣବର ସାର କର୍ତ୍ତବ୍ୟ ସମସ୍ତହିଁ ରହିଅଛି । ସମ୍ବନ୍ଧ, ଅଭିଧେୟ ଓ ପ୍ରୟୋଜନ ତିନ ତତ୍ତ୍ୱର ସିଦ୍ଧାନ୍ତ ମୀମାଂସାହିଁ ଏହି ଗ୍ରନ୍ଥର ଅନ୍ତର୍ଭୁକ୍ତ ।

ମହାପ୍ରଭୁ ପୁଣି ଶ୍ରୀଳ ସ୍ୱରୂପଗୋସାଇଁ ଓ ଶ୍ରୀଳ ରାମାନନ୍ଦରାୟ ପ୍ରଭୃତି ଅନ୍ତରଙ୍ଗ ଭକ୍ତଙ୍କୁ ଯେଉଁ ଇଷ୍ଟାଳାପ କରୁ କରୁ କହିଅଛନ୍ତି, ଶ୍ରୀହରି ନାମ ସଂକୀର୍ତ୍ତନହିଁ କଳିକାଳର ପରମ ଉପାୟ । ନାମସଂକୀର୍ତ୍ତନଦ୍ୱାରା ସମସ୍ତ ଅନର୍ଥ ନିବୃତ୍ତି ହୁଏ ଓ ଅମୂଲ୍ୟ କୃଷ୍ଣ ପ୍ରେମ ପର୍ଯ୍ୟନ୍ତ ସେଥିରୁ ମିଳେ । ଯଥାଃ—

ହର୍ଷେ ପ୍ରଭୁ କହେ—ଶୁନ ସ୍ୱରୂପରାମ ରାୟ,
ନାମ ସଂକୀର୍ତ୍ତନ କଲୌ ପରମଉପାୟ ।
ସଙ୍କୀର୍ତ୍ତନ ଯଜ୍ଞେ କୈଲେ କୃଷ୍ଣ ଆରାଧନ,
ସେଇ ତ ସୁମେଧା ପାୟ କୃଷ୍ଣେର ଚରଣ ।
ନାମ ସଂକୀର୍ତ୍ତନ ହୈତେ ସର୍ବାନର୍ଥ ନାଶ,
ସର୍ବ ଶୁଭୋଦୟ କୃଷ୍ଣ ପ୍ରେମେର ଉଲ୍ଲାସ ।
ସଂକୀର୍ତ୍ତନ ହୈତେ ପାପ ସଂସାର ନାଶନ,
ଚିତ୍ତ ଶୁଦ୍ଧି, ସର୍ବ ଭକ୍ତିସାଧନ ଉଦ୍ଗମ ।
କୃଷ୍ଣ ପ୍ରେମୋଦ୍ଗମ ପ୍ରେମାମୃତ ଆସ୍ୱାଦନ,
କୃଷ୍ଣ ପ୍ରାପ୍ତି ସେବାମୃତ ସମୁଦ୍ରେ ମଜ୍ଜନ ।

ଶ୍ରୀହରି ନାମସଂକୀର୍ତ୍ତନର ଫଳମାନ ଅଷ୍ଟ ଭାବରେ କୀର୍ତ୍ତନ କରି ପୁଣି କିରୂପ ଭାବରେ ଶ୍ରୀହରି ନାମ ନେବା ବିଧେୟ ତାହା ପୁଣି ମହାପ୍ରଭୁ କୀର୍ତ୍ତନ କରୁ ଅଛନ୍ତି । ଯଥା—

ଯେରୂପେ ଲଇଲେ ନାମ ପ୍ରେମ ଉପଜୟ,
ତାହାର ଲକ୍ଷଣ ଶୁଣ ସ୍ୱରୂପ ରାମ ରାୟ ।
ତୃଣାଦପି ସୁନୀଚେନ, ତରୋରିବ ସହିଷ୍ଣୁନା
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦା ହରିଃ ।

(ଚୈଃ ଅନ୍ତ୍ୟ—୨୦)

ଏହିରୂପ କଥୋପକଥନ ଛଳରେ ଜୀବ ହିତ ପାଇ ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟ ଓ ସାଧ୍ୟ ସାଧନତତ୍ତ୍ୱ ସମସ୍ତ ବିସ୍ତାର କହିଥିଲେ ।

ଜୀବ ମାୟାଦ୍ୱାରା ସତତ ପ୍ରପୀଡ଼ିତ । ମାୟା ହାତରୁ ରକ୍ଷା ପାଇବା ପାଇଁ ଓ କାମକ୍ରୋଧାଦି ପ୍ରବଳ ରିପୁବର୍ଗଙ୍କୁ ଦୂରରେ ବିତାଡ଼ିତ କରିବା ପାଇଁ ଜୀବ ସତତ ସାବଧାନ ହେବା ଉଚିତ । ଜୀବମାନେ କିରୂପେ ସାବଧାନ ହୋଇ ଆତ୍ମରକ୍ଷା କରିବେ ସେଥିର ଉତ୍ତମ ଆଦର୍ଶ ମଧ୍ୟ ମହାପ୍ରଭୁ ଆମ୍ଭମାନଙ୍କ ପାଇଁ ରଖି ଯାଇ ଅଛନ୍ତି । ଶ୍ରୀ ଛୋଟହରିଦାସ ମହାପ୍ରଭୁଙ୍କର ପ୍ରିୟ କୀର୍ତ୍ତନୀୟା । ସେ ମଧୁର କୀର୍ତ୍ତନରେ ମହାପ୍ରଭୁଙ୍କୁ ପ୍ରୀତି ଦାନ କରନ୍ତି । କିନ୍ତୁ ସାମାନ୍ୟ ସ୍ତ୍ରୀ ସମ୍ଭାଷଣରୂପ ଦୋଷ ଦେଖି ମହାପ୍ରଭୁ ତାହାଙ୍କୁ ବର୍ଜନ କରିଥିଲେ, ଏବଂ ସ୍ୱରୂପ ଗୋସାଇଁ ପ୍ରଭୃତି ଅନ୍ତରଙ୍ଗ ଭକ୍ତମାନେ ଦୋଷ ମାର୍ଜ୍ଜନାପୂର୍ବକ ହରିଦାସଙ୍କୁ ଗ୍ରହଣ କରିବାକୁ ଅନେକ ଅନୁରୋଧ କଲେହେଁ, ସେ ସମସ୍ତ ବିଫଳ ହୋଇଥିଲା । ମହାପ୍ରଭୁ କହିଥିଲେ—

ପ୍ରଭୁ କହେ—ବୈରାଗୀ କରେ ପ୍ରକୃତି ସମ୍ଭାଷଣ,
ଦେଖିତେ ନା ପାରି ଆମି ତାହାର ବଦନ ।
ଦୁର୍ବାର ଇନ୍ଦ୍ରିୟ କରେ ବିଷୟ ଗ୍ରହଣ,
ଦାରବୀ ପ୍ରକୃତି ହରେ ମୁନେରପି ମନ ।
କ୍ଷୁଦ୍ର ଜୀବ ସବ ମର୍କଟ ବୈରାଗ୍ୟ କରିୟା,
ଇନ୍ଦ୍ରିୟ ଚରାଞା ବୁଲେ ପ୍ରକୃତି ସମ୍ଭାଷିୟା ।

ଚୈଃ ଅନ୍ତ୍ୟ—୨ପର

ଏହା ପରେ ମହାପ୍ରଭୁଙ୍କର ସମସ୍ତ ପ୍ରିୟ ଭକ୍ତମାନେ ଏକତ୍ରରେ ମିଳି ହରିଦାସଙ୍କୁ କ୍ଷମା କରିବାପାଇଁ ଅଭି ଥରେ ଅନୁରୋଧ କରନ୍ତେ, ମହାପ୍ରଭୁ କହିଲେ "ମୋତେ ଏରୂପ ବ୍ୟସ୍ତ କଲେ ମୁଁ ଏ ପୁରୀ ଛାଡ଼ି ଅନ୍ୟତ୍ର ଚାଲିଯିବି ।" ଜୀବ ହିତ ଉଦ୍ଦେଶ୍ୟରେ ଦୟାର ସାଗର ଓ କ୍ଷମାର ସାଗର ଶ୍ରୀଲ ମହାପ୍ରଭୁ ଏରୂପ କାଠିନ୍ୟ ପ୍ରଦର୍ଶନ କରିଥିଲେ । ପରସ୍ତ୍ରୀ ସଂସର୍ଗରୁ ସମସ୍ତ ଭକ୍ତମାନେ ଓ ବିଶେଷତଃ ଭେକଧାରୀ ବୈଷ୍ଣବମାନେ ଯେପରି ବହୁଦୂରରେ ରହନ୍ତି ସ୍ୱପ୍ନରେ ସୁଦ୍ଧା ସ୍ତ୍ରୀ ସଂସର୍ଗ ମନକୁ ନ ଆଣନ୍ତି ଏହିରୂପ ସାକ୍ଷାତ ହେବାପାଇଁ ମହାପ୍ରଭୁ ପ୍ରିୟପାର୍ଷଦମାନଙ୍କ ଅନୁରୋଧରେ ମଧ ଦ୍ରବୀଭୂତ ହୋଇ ନ ଥିଲେ ।

ଅବୈଧ ସ୍ତ୍ରୀ ସଂସର୍ଗ ବିରୁଦ୍ଧରେ ମହାପ୍ରଭୁ ଆହୁରି ଅନେକ ଉଦାହରଣ ରଖିଯାଇ ଅଛନ୍ତି । ଅନ୍ୟପ୍ରତି ଉପଦେଶ ବା ଶିକ୍ଷା ତ ଦୂରର କଥା, ତାହାଙ୍କ ନିଜ କାର୍ଯ୍ୟପ୍ରତି ମଧ ତାହାଙ୍କର ନିରପେକ୍ଷ ପରିକରମାନେ କଟାକ୍ଷ କରିବାକୁ ଛାଡ଼ୁନାହାନ୍ତି । ଗମ୍ଭୀରାରେ ବାସ କାଳରେ ଗୋଟିଏ ସୁନ୍ଦର ବ୍ରାହ୍ମଣବାଳକ ମହାପ୍ରଭୁଙ୍କ ନିକଟକୁ ନିତ୍ୟ ଆସୁଥାଏ । ମହାପ୍ରଭୁ ମଧ୍ୟ ସେ ବାଳକପ୍ରତି ସ୍ନେହପ୍ରଦର୍ଶନ କରୁଥିଲେ । କିନ୍ତୁ ତାହାର ମାତା ଏକେ ବିଧବା ଯୁବତୀ ଓ ପୁଣି ପରମା ସୁନ୍ଦରୀ । ଅତଏବ ସେ ବାଳକର ପ୍ରତ୍ୟହ ଆଗମନ ଓ ମହାପ୍ରଭୁଙ୍କର ତାହାପ୍ରତି ସ୍ନେହପ୍ରଦର୍ଶନ ଶ୍ରୀ ଦାମୋଦର ପଣ୍ଡିତଙ୍କୁ ରୁଚିକର ବୋଧ ହେଉନାହିଁ । ସେ ମନଭାବ ଗୋପନ କରି ନ ପାରି ଦିନେ କହିଲେ "ପ୍ରଭୋ, ଆପଣ ସ୍ୱତନ୍ତ୍ର, ଆପଣ ସମସ୍ତଙ୍କର ଉପଦେଶକର୍ତ୍ତା, ଆପଣଙ୍କୁ ପୁଣି କିଏ କି ଉପଦେଶ ଦେବ, ତେବେ ଯେତେବେଳେ ମନୁଷ୍ୟରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି, ଲୌକିକ ବ୍ୟବହାର ପ୍ରତି ଆପଣଙ୍କର ଦୃଷ୍ଟି ରଖିବା ଉଚିତ । ଆପଣ ସ୍ୱୟଂ ଭଗବାନ୍ ହେଲେହେଁ, ଏ ମୁଖର ଜଗତର ମୁଖ ଆଚ୍ଛାଦନ କରି ପାରିବେ ନାହିଁ । ଆପଣ ଏ ବାଳକ ପ୍ରତି ଅତି ସ୍ନେହ ପ୍ରଦର୍ଶନ କରୁଥିବାରୁ ନିନ୍ଦୁକଲୋକେ ଆପଣଙ୍କର ନିନ୍ଦାରଟନା କରିବେ । ଯଥା—

ଅନ୍ୟ ଉପଦେଶେ ପଣ୍ଡିତ କହେ ଗୋସାଇଁର ଧର୍ମ ।
ଗୋସାଇଁ ଗୋସାଇଁ ଏବେ ଜାନବ ଗୋସାଇଁ ।
ଏବେ ଗୋସାଇଁର ଗୁଣ ଯଶ ସବଲୋକେ ଗାଇବେ ।
ତବେ ଗୋସାଇଁର ପ୍ରତିଷ୍ଠା ପୁରୁଷୋତ୍ତମେ ହୈବେ ।

ଦାମୋଦରଙ୍କର ଏହି ସ୍ପଷ୍ଟବାଦିତାରେ ମହାପ୍ରଭୁ ପରମସନ୍ତୋଷ ଲାଭ କରିଥିଲେ । ମହାପ୍ରଭୁଙ୍କ ସମ୍ବନ୍ଧରେ ଏରୂପ ସନ୍ଦେହର କୌଣସି କାରଣ ନ ଥିଲେହେଁ ନରଲୀଳା କରୁଥିବାରୁ ଲୋକଶିକ୍ଷାପାଇଁ ମହାପ୍ରଭୁ ସେହି ପ୍ରିୟଭର୍ତ୍ସନକୁ ପରମସାଦରେ ଗ୍ରହଣ କରିଥିଲେ ।

ଏକଦିନରେ ଜଣେ ଦେବଦାସୀ ( ମାହାରି ) ଅତି ସୁମଧୁର ସ୍ୱରରେ ଶ୍ରୀଗୀତଗୋବିନ୍ଦର ପଦାବଳୀ ଗାନ କରୁଥିଲେ, ମହାପ୍ରଭୁ ସେ ଗାନ ଶୁଣି ପ୍ରେମବିହ୍ୱଳ ହୋଇ ସେହି ଦିଗକୁ ଦଉଡ଼ିଲେ । ମହାପ୍ରଭୁଙ୍କ ପ୍ରିୟସେବକ ଗୋବିନ୍ଦ ଦେଖିଲେ, ଏତ ଏକ ବିଷମ ସଙ୍କଟ ଉପସ୍ଥିତ, ମହାପ୍ରଭୁଙ୍କର ତ ବାହ୍ୟଜ୍ଞାନ ନାହିଁ, ସେ ଯଦି ଏହି ପ୍ରେମବିହ୍ୱଳ ଅବସ୍ଥାରେ ଏ ଦେବଦାସୀଙ୍କୁ ଆଲିଙ୍ଗନ କରନ୍ତି, ପରେ ବାହ୍ୟଜ୍ଞାନ ହେଲେ ମହାପ୍ରଭୁଙ୍କର ବୈକଲ୍ୟର ସୀମା ରହିବ ନାହିଁ । ଏହା ଭାବି ଦଉଡ଼ିଯାଇ ମହାପ୍ରଭୁଙ୍କୁ କୁଣ୍ଢାଇ ଧରି ଅଟକାଇଲେ ଏବଂ କହିଲେ "ପ୍ରଭୋ ! ଏ ଯେ ଦେବଦାସୀର ଗାନ ।" ମହାପ୍ରଭୁଙ୍କର ବାହ୍ୟଜ୍ଞାନ ଆସିଲା ଏବଂ ସେ କହିଲେ "ଗୋବିନ୍ଦ, ତୁମ୍ଭେ ଆଜି ମୋର ପ୍ରାଣ ରକ୍ଷାକଲ ।" ଯଥା—

ପ୍ରଭୁ କହେ ଗୋବିନ୍ଦ ଆଜି ରଖିଲେ ଜୀବନ ।
ସ୍ତ୍ରୀ ପରଶ ହୈଲେ ଆମାର ହଇତ ମରନ । ଚୈଃ ଅନ୍ତ୍ୟ ୧୩।

ଏହିରୂପେ ଅବୈଧ ସ୍ତ୍ରୀସଙ୍ଗ ଯେ ବଡ଼ ଦୋଷାବହ ଓ ଭକ୍ତିପଥର ପ୍ରଧାନ ଅନ୍ତରାୟ ଏହା ନାନାପ୍ରକାର ଉପଦେଶ ଓ ଉଦାହରଣ ଦ୍ୱାରା ମହାପ୍ରଭୁ ଶିକ୍ଷା ଦେଇ ଯାଇ ଅଛନ୍ତି ।

ଅର୍ଥହିଁ ବହୁ ଅନର୍ଥର ମୂଳ । ଭକ୍ତ ପକ୍ଷରେ ଅସତ୍ ଅର୍ଥ ଓ ଅସତ୍ ବ୍ୟୟ ଉଭୟହିଁ ଦୋଷାବହ । ମହାପ୍ରଭୁ ଏ ବିଷୟରେ ମଧ୍ୟ ବହୁସ୍ଥାନରେ ଶିକ୍ଷା ଦେଇଅଛନ୍ତି । ସେଥିମଧ୍ୟରୁ ଗୋଟିଏ ଉଦାହରଣ ନିମ୍ନରେ ପ୍ରଦର୍ଶିତ ହେଲା ।

ଶ୍ରୀଲ ଗୋପୀନାଥ ପଟ୍ଟନାୟକ ପ୍ରସିଦ୍ଧ ଶ୍ରୀରାମାନନ୍ଦ ରାୟଙ୍କର କନିଷ୍ଠ ଭ୍ରାତା । ସେ ମହାରାଜା ଶ୍ରୀ ପ୍ରତାପରୁଦ୍ରଦେବଙ୍କର କୌଣସି କର୍ମରେ ନିଯୁକ୍ତ ଥାଇ ୨ ଲକ୍ଷ ରାଜଧନ ନିଜକାର୍ଯ୍ୟରେ ବ୍ୟୟ କରିଥିଲେ । ସେଥିରେ ରାଜପୁତ୍ର ଶ୍ରୀପୁରୁଷୋତ୍ତମ ଜେନା ତାହାଙ୍କୁ ଚାଙ୍ଗ ଉପରେ ଚଢ଼ାଇ ପ୍ରାଣ ନେବାର ଭୟ ଦେଖାଇଥିଲେ । ମହାପ୍ରଭୁଙ୍କ କୃପା କୌଶଳରେ ଗୋପୀନାଥ ଚାଙ୍ଗରୁ ମୁକ୍ତ ହୁଅନ୍ତେ ସେ ମହାପ୍ରଭୁଙ୍କ ଦର୍ଶନକୁ ଯାଇ ତାହାଙ୍କୁ ପ୍ରଣାମ କଲେ । ସେତେବେଳେ ମହାପ୍ରଭୁ ତାହାଙ୍କୁ କରୁଣା ପୂର୍ବକ କହିଥିଲେ ।—

ବ୍ୟୟ ନା କରିହ କିଛୁ ରାଜାର ମୂଳଧନ ।
ରାଜାର ମୂଳଧନ ଦିଆ ଯେ କିଛୁ ଲଭ୍ୟ ହୟ ।
ସେଇଧନ କରିହ ନାନା ଧର୍ମ କର୍ମେ ବ୍ୟୟ ।
ଅସଦ୍ ବ୍ୟୟ ନା କରିହ ଯାତେ ଦୁଇ ଲୋକ ଯାୟ ।

ଇତି ଅନ୍ତ୍ୟ ୯ ।

ଭେକଧାରୀ ବୈଷ୍ଣବଙ୍କ ପାଇଁ ବୈରାଗ୍ୟର ଚୂଡ଼ାନ୍ତ ଶିକ୍ଷା ସେ ନିଜ ଉଦାହରଣରେ ରଖି ଯାଇଅଛନ୍ତି । କୋଟି କୋଟି ବ୍ରହ୍ମାଣ୍ଡର ଈଶ୍ୱର ଶ୍ରୀମନ୍ନାରାୟଣ ଯାହାଙ୍କର ଅଂଶସମ୍ଭୂତି, ସେହି ମୂଳ ନାରାୟଣ ଗୋଲୋକର ଅଧୀଶ୍ୱର ହୋଇ ଅନ୍ନ ପାନ ଭିକ୍ଷାରେ ପାଉ ଅଛନ୍ତି ।

ତାହାଙ୍କର ଏ ବୈରାଗ୍ୟ ଶ୍ରୀ ଜଗଦାନନ୍ଦ ପଣ୍ଡିତଙ୍କୁ ସହ୍ୟ ହେଉନାହିଁ । ସେ ଗୌଡ଼ଦେଶକୁ ଯାଇଥିଲେ, ସେଠାରୁ ଉତ୍ତମ ସୁଗନ୍ଧ

ତେଲ ମହାପ୍ରଭୁଙ୍କ ବ୍ୟବହାର ପାଇଁ ଆଣାଇ ଥିଲେ । ସେ ମହାପ୍ରଭୁଙ୍କୁ ସେ ତେଲ ବ୍ୟବହାର ପାଇଁ ବହୁ ଅନୁରୋଧ କଲେହେଁ, ମହାପ୍ରଭୁ ସେଥିରେ ରାଜି ହେଲେ ନାହିଁ । ଶ୍ରୀ ଜଗଦାନନ୍ଦ ତହିଁରେ ପରମ ଦୁଃଖିତ ହୋଇ ସେ ତେଲ କଳସୀ ଘରୁ ଆଣି ମହାପ୍ରଭୁଙ୍କ ସମ୍ମୁଖରେ ଭାଙ୍ଗିଦେଇ ନିଜ କୁଟୀରକୁ ଯାଇ ଉପବାସରେ ଶୋଇ ରହିଲେ । ମହାପ୍ରଭୁ ଶ୍ରୀ ଜଗଦାନନ୍ଦ ଉପବାସ କରି ଶୋଇଥିବାର ଜାଣି ମଧ୍ୟ, ଏ ଗୃହରୁ ମାନ ହଠାତ୍ ଭାଙ୍ଗି ହେବ ନାହିଁ ଏହା ମନେ କରି ତୃତୀୟ ଦିବସରେ ତାହାଙ୍କ କୁଟୀରକୁ ଯାଇ ପ୍ରଣୟ ସମ୍ବୋଧନ ପୂର୍ବକ କହିଲେ, ଶ୍ରୀ ଜଗଦାନନ୍ଦ ! ମୁଁ ଆଜ ଏହିଠାରେ ଭିକ୍ଷା କରିବାକୁ ଆସିଅଛି । ତୁମ୍ଭ ହସ୍ତପାକ ସୁସ୍ୱାଦୁ ଅନ୍ନ ଭୋଜନ କରିବି । ମହାପ୍ରଭୁଙ୍କର ଏ ସୁଆଗ ବଚନରେ କି ଜଗଦାନନ୍ଦଙ୍କର ମାନ ଆଉ ରହିପାରେ । ସେ ତତ୍କ୍ଷଣାତ୍ ଉଠି ସ୍ନାନ କରି ପାକ କଲେ ଓ ମହାପ୍ରଭୁଙ୍କୁ ଭିକ୍ଷା କରାଇ ତାଙ୍କ ଅଗ୍ରହରେ ନିଜେ ମଧ୍ୟ ପ୍ରସାଦ ସେବନ କଲେ । ସେହି ଜଗଦାନନ୍ଦ ପୁଣି ଅନ୍ୟ ଏକ ସମୟରେ ଏକ ତୁଳାଭର୍ତ୍ତି ରେଜେଇ ପ୍ରସ୍ତୁତ କରି ମହାପ୍ରଭୁଙ୍କୁ ଶୋଇବାକୁ ତହିଁରେ ଅନୁରୋଧ କଲେ । ଶ୍ରୀ ଜଗଦାନନ୍ଦ ମହାପ୍ରଭୁଙ୍କର ଅତି ପ୍ରଣୟ ପାତ୍ର ହେଲେ ମଧ୍ୟ ମହାପ୍ରଭୁ ସେ ରେଜେଇ ବ୍ୟବହାର କରିବାକୁ ସ୍ୱୀକାର କରି ନ ଥିଲେ ।

ଏହିରୂପେ ମହାପ୍ରଭୁ ତାହାଙ୍କର ଅବତାରର ପ୍ରେମ ପ୍ରଚାର ରୂପ ଗୌଣ ଉଦ୍ଦେଶ୍ୟ ସାଧନ କରିଥିଲେ । ଏକ ପ୍ରକାର ତାହାଙ୍କର ପ୍ରକଟ-ଲୀଳାର ଶେଷ ୨୪ ବର୍ଷ ସେ ଏହି ପୁରୀରେ ଏହିରୂପ ଧର୍ମ ଶିକ୍ଷା ଦେଇ ଅତିବାହିତ କରିଥିଲେ । ଉତ୍କଳ ପକ୍ଷରେ ଏହି ୨୪ ବର୍ଷ ଯେ କି ରୂପ ଶୁଭଦାୟକ ଥିଲା ତାହା କହିଯାଇ ନ ପାରେ । ଏତ ଗଲା ଜୀବମାନଙ୍କ ପକ୍ଷରେ । ଏବେ ମହାପ୍ରଭୁ ଯେଉଁ ମୁଖ୍ୟ ଉଦ୍ଦେଶ୍ୟରେ ଅବତାର ହୋଇଥିଲେ ତାହା କିପରି ସମ୍ପନ୍ନ କରିଥିଲେ, ସେଥି ସମ୍ବନ୍ଧରେ ସଂକ୍ଷେପ ଆଲୋଚନା କରାଯାଉ ।

ଶ୍ରୀରୂପଗୋସ୍ୱାମୀଙ୍କ କୃତ ମହାପ୍ରଭୁଙ୍କ ଅବତାରର ମୁଖ୍ୟ ଉଦ୍ଦେଶ୍ୟ ସମ୍ବନ୍ଧୀୟ ଶ୍ଲୋକଟି ଏଥି ପୂର୍ବରୁ ଉଦ୍ଧୃତ କରାହୋଇ ଅଛି । ଶ୍ରୀଲ କୃଷ୍ଣଦାସକବିରାଜ ଶ୍ରୀ ଚୈତନ୍ୟଚରିତାମୃତର ଆଦିଲୀଳା ଚତୁର୍ଥ ପରିଚ୍ଛେଦରେ ତାହାର ପଦ୍ୟବ୍ୟାଖ୍ୟା କରିଅଛନ୍ତି । ଶ୍ରୀକୃଷ୍ଣ ମନେକଲେ, ମୁଁ ତ ପୂର୍ଣ୍ଣାନନ୍ଦମୟ ଏବଂ ରସର ନିଧାନ, ତଥାପି ଶ୍ରୀରାଧିକା ପ୍ରେମରେ ଏମନ୍ତ କି ମାଧୁର୍ଯ୍ୟ ଅଛି ଯେ ତାହା ମୋତେ ମଧ୍ୟ ଉନ୍ମତ୍ତ କରାଏ । ଯଥା—

କୃଷ୍ଣ କହେ—ଆମି ହଇ ରସେର ନିଧାନ ।
ପୂର୍ଣ୍ଣାନନ୍ଦମୟ ଆମି ଚିନ୍ମୟ ପୂର୍ଣ୍ଣ ତତ୍ତ୍ୱ,
ରାଧିକାର ପ୍ରେମେ ଆମାୟ କରାୟ ଉନ୍ମତ୍ତ ।
ନାଜାନି ରାଧାର ପ୍ରେମେ ଆଛେ କୋନ ବଲ,
ଯେ ବଲେ ଆମାରେ କରେ ସର୍ବଦା ବିହ୍ୱଲ ।
ରାଧିକାର ପ୍ରେମଗୁରୁ, ଆମି ଶିଷ୍ୟ ନଟ
ସଦା ଆମାୟ ନାନା ନୃତ୍ୟେ ନାଚାୟ ଉଦ୍ଭଟ ।

( ଚୈଃ ଆଦି ୪ )

ମୁଁ ଏହି ପ୍ରେମର ବିଷୟ ଏବଂ ଶ୍ରୀ ରାଧିକା ଏହାର ଆଶ୍ରୟ । ମୁଁ ଯଦି ଏ ପ୍ରେମର ଆଶ୍ରୟ ହୋଇ ପାରେଁ, ତେବେହିଁ ଏହି ପ୍ରେମ ସମ୍ୟକ ଆସ୍ୱାଦନୀୟ ହୋଇ ପାରିବ । ପୁଣି ମୋର ମଧୁରିମା ଯାହା ଶ୍ରୀ ରାଧିକା ଆସ୍ୱାଦନ କରନ୍ତି ସେବା କିରୂପ ଚମତ୍କାରିକା ସେ ମୁଁ ତାହା ନିଜେ ଜାଣିବା ପାଇଁ ବହୁ ଯତ୍ନ କଲେ ମଧ୍ୟ ସମ୍ୟକ ଉପଲବ୍ଧି କରି ପାରୁନାହିଁ । ଯଥା—

କୃଷ୍ଣେର ମାଧୁର୍ଯ୍ୟ କୃଷ୍ଣେ ଉପଜାୟ ଲୋଭ ।
ସମ୍ୟକ ଆସ୍ୱାଦିତେ ନାରେ ମନେରହେ କ୍ଷୋଭ ।

( ଚୈଃ ଆଦି ୪ )

ଏବଂ ଶ୍ରୀରାଧା ମୋ ଠାରୁ ଯେ ଜାତୀୟ ସୁଖ ଅନୁଭବ କରନ୍ତି ଓ ତାହାର ଗାଢ଼ତା ବା କେତେ ଦୂର । ଯଥା—

ଅମାଠାରେ ରାଧା ପାନ୍ତି ଯେ ଜାତୀୟ ସୁଖ,
ତାହା ଅସ୍ୱାଦିତେ ଅମି ସଦାଇ ଉନ୍ମୁଖ ।
ନାନା ଯତ୍ନ କରି ଅମି, ନାରି ଅସ୍ୱାଦିତେ
ସେ ସୁଖ ମାଧୁର୍ଯ୍ୟ ଘ୍ରାଣେ ତାହାର ବାଢ଼େ ଚିତ୍ତେ ।

ଏହି ତିନି ଉଦ୍ଦେଶ୍ୟହିଁ ମହାପ୍ରଭୁଙ୍କର ଅବତାରର ମୁଖ୍ୟ ହେତୁ ଓ ସେ ତେଣୁ ଶ୍ରୀରାଧାଙ୍କର ଭାବ ଓ କାନ୍ତି ଧାରଣପୂର୍ବକ ନବଦ୍ୱୀପରେ ଅବତୀର୍ଣ୍ଣ ହୋଇ ଥିଲେ । ଏ ସମସ୍ତ ବିଷୟରେ ଲେଖିବାକୁ ଯିବା ମୋ ପକ୍ଷରେ ଧୃଷ୍ଟତା ମାତ୍ର । କୌଣସି କଳସାହେବ ବସି ଲେଖିଛନ୍ତି ଏବଂ କେବଳ ଅକ୍ଷର ମାତ୍ର ପଢ଼ିପାରୁ ଥିବା ନକଲନବିସ ସେ ଗ୍ରନ୍ଥର ନକଲ ପ୍ରସ୍ତୁତ କରୁ ଅଛନ୍ତି । ଅର୍ଥବୋଧ ନ ଥିବାରୁ ହୁଏତ God ( ଈଶ୍ୱର ) ସ୍ଥାନରେ ପଢ଼ି ନ ପାରି Dog ( କୁକୁର ) ଅକ୍ଷର ଦେଇ ବସିଛନ୍ତି । Eat ( ଖାଇବା ) ପଦ ସ୍ଥାନରେ ହୁଏତ Cat ( ବିରାଡ଼ି ) ଲେଖି ଦେଇଛନ୍ତି । ଏ ଶ୍ରୀରାଧାକୃଷ୍ଣ ପ୍ରେମରସ ଯାହାକି ମହାପ୍ରଭୁ କେବଳ ଅନ୍ତରଙ୍ଗମାନଙ୍କ ସହ ଅସ୍ୱାଦନ କରୁଥିଲେ, ସେ ଅତି ନିଗୂଢ଼ ରହସ୍ୟ ଆଲୋଚନା । ମୋ ପକ୍ଷରେ ଉପରୋକ୍ତ ନକଲ ନବିସଙ୍କ ପରି ଶ୍ରୀଚୈତନ୍ୟ ଚରିତାମୃତରୁ ଶ୍ରୀ କୃଷ୍ଣଦାସ କବିରାଜଙ୍କ ଜଜମେଣ୍ଟ ( Judgment ) ନକଲ ସ୍ୱରୂପ ଅଟେ । ମୁଁ ମାଣିକର କଷଣୀତୁଲ୍ୟ ମାଣିମାନ ବାଛିଦେବା ଭଳି ଲୋକ । ତେବେ ବାଆଁଳ ଯେ ମୁଁ ଏତାଦୃଶ ଗୁରୁତ୍ୱ କାର୍ଯ୍ୟରେ ଜାଣି ଶୁଣି ମଧ୍ୟ ହାତ ଦେଇଛି ତାହା ମଧ୍ୟ ମୁଁ କହିପାରୁ ନାହିଁ । ଯାହାହେଉ ସହୃଦୟ ଶ୍ରୀ ଗୌରଭକ୍ତ ପାଠକମାନେ ଯେପରି ମୋର ଏ ଅସୀମ ସାହସ ଓ ଧୃଷ୍ଟତାକୁ ମାର୍ଜନା କରନ୍ତି ।

ମହାପ୍ରଭୁ ଏହି ଉପରୋକ୍ତ ନିର୍ବାଞ୍ଛା କିରୂପେ ସଫଳ କରିଥିଲେ ଦେଖାଯାଉ । ସେ ଯେଉଁ ୨୪ ବର୍ଷ ଉତ୍କଳରେ ପ୍ରକଟ ଲୀଳା କରିଥିଲେ ସେଥିମଧ୍ୟରୁ ୧୮ ବର୍ଷ, ବିଶେଷତଃ ଶେଷ ୧୨ ବର୍ଷ ସେ ନିଜ ଅନ୍ତରଙ୍ଗ ଭକ୍ତ ଶ୍ରୀଲ ସ୍ୱରୂପ ଗୋସ୍ୱାଇଁ ଓ ଶ୍ରୀଲ ରାମାନନ୍ଦ ରାୟ ପ୍ରଭୃତିଙ୍କୁ ଘେନି ପ୍ରାୟ ସର୍ବଦା ଶ୍ରୀ ରାଧାଭାବରେ ବିହ୍ୱଳ ହୋଇଥିଲେ । ଶ୍ରୀକୃଷ୍ଣ ଶ୍ରୀରାଧାଦି ଗୋପୀମାନଙ୍କୁ ତ୍ୟାଗକରି ମଥୁରା ଯାଇଅଛନ୍ତି ଓ ଶ୍ରୀ ରାଧାଦି ଗୋପୀମାନେ ଶ୍ରୀକୃଷ୍ଣ ବିରହରେ ଉନ୍ମାଦିନୀ ପରି ହୋଇ କାଳ କାଟୁଅଛନ୍ତି, ସେମାନଙ୍କୁ ପ୍ରବୋଧ ଦେବାପାଇଁ ତ ଶ୍ରୀକୃଷ୍ଣ ନିଜ ସଖା ଉଦ୍ଧବଙ୍କୁ ପଠାଇ ଅଛନ୍ତି ଏବଂ ତାହାଙ୍କୁ ଦେଖି ଏମାନଙ୍କର ବିରହ ଉନ୍ମାଦ ବଢ଼ି ପଡ଼ୁଅଛି, ଯେମାନେ ପାଗଳିନୀ ହୋଇ ନାନା ପ୍ରଳାପ କରୁଅଛନ୍ତି, ମହାପ୍ରଭୁଙ୍କର ଏହି ୧୨ ବର୍ଷ ଠିକ ସେହି ଦଶା । ସେ ପାଗଳ ହୋଇ ପ୍ରଳାପ କରୁଅଛନ୍ତି ଓ ଶ୍ରୀଲ ସ୍ୱରୂପ ଓ ଶ୍ରୀଲ ରାମାନନ୍ଦ ତାହାଙ୍କୁ ପ୍ରବୋଧ ଦେଉଅଛନ୍ତି । ମହାପ୍ରଭୁଙ୍କର ଏହି ଦିବ୍ୟୋନ୍ମାଦ ସମୟରେ ପ୍ରାୟ ତିନିଦଶା ଘଟିଥିଲା, ଅନ୍ତର ଦଶା, ଅର୍ଦ୍ଧବାହ୍ୟ ଦଶା ଓ ନିପଟ ବାହ୍ୟଦଶା । କିନ୍ତୁ ଅଧିକାଂଶ ସମୟ ସେ ଅନ୍ତର ଦଶାରେ ରହୁଥିଲେ । ସେଥିରୁ କିଛି କିଛି ନିମ୍ନରେ ପ୍ରକାଶ କରାହେବ ।

ଏହି ଯେ ଶ୍ରୀ ରାଧାଭାବରେ ବିଭାବିତ ହୋଇ ମହାପ୍ରଭୁଙ୍କର ପ୍ରେମାସ୍ୱାଦନ ତାହା ବୁଝିବାକୁ ହେଲେ ଶ୍ରୀରାଧା କିଏ ଓ ତାହାଙ୍କର କିରୂପ ଭାବମାନ ଜାତହୁଏ ଏହା ଜାଣିବା ଆବଶ୍ୟକ ।

ଶ୍ରୀ ରାଧାହିଁ ଶ୍ରୀକୃଷ୍ଣଙ୍କର ହ୍ଲାଦିନୀନାମା ଶକ୍ତି । ଶ୍ରୀକୃଷ୍ଣ ବୈକୁଣ୍ଠର ଊର୍ଦ୍ଧ୍ୱସ୍ଥ ତାହାଙ୍କର ସର୍ବୋତ୍ତମଧାମ ଶ୍ରୀ ଗୋଲୋକରେ ନିଜ ପତ୍ନୀ ଶ୍ରୀରାଧା ଏବଂ ରାଧାଲତାଙ୍କର ଦ୍ୱାଦଶ ସ୍ଥାନୀୟା ଲଳିତାଦି ସଖୀମଞ୍ଜରୀଙ୍କୁ ଘେନି ସର୍ବଦା ମଧୁରଲୀଳା କରୁଅଛନ୍ତି । ସେଠାରେ ଶ୍ରୀ ନନ୍ଦ ଯଶୋଦାଦି ଗୁରୁବର୍ଗ, ସୁବଳ ମଧୁମଙ୍ଗଳାଦି ସଖାବର୍ଗ ଓ ରକ୍ତକପତ୍ରକାଦି ଭୃତ୍ୟବର୍ଗ ମଧ୍ୟ ରହିଅଛନ୍ତି ।

ଗୋବର୍ଦ୍ଧନଧାରଣଲୀଳା ମଧ୍ୟ ସେଠାରେ ହୋଇଅଛି । କିନ୍ତୁ ସେହି ଗୋଲୋକ-ଲୀଳା ବିଳାସଠାରୁ ନର କୌଣସି ନୂତନ ପ୍ରକାର ଅତି ଚମତ୍କାର ବିଳାସ ପ୍ରତି ଶ୍ରୀକୃଷ୍ଣଙ୍କର ଇଚ୍ଛା ହୁଅନ୍ତେ ତାହାଙ୍କର ସ୍ୱରୂପଶକ୍ତି ଯୋଗମାୟା ସେହି ସମସ୍ତ ପରିକରମାନଙ୍କୁ ଗୋକୁଳରେ ପ୍ରକଟ କରାଇଲେ । ଯଥା—

କୃଷ୍ଣେର ଯତେକ ଖେଲା ସର୍ବୋତ୍ତମ ନର ଲୀଳା
ନରବପୁ ତାହାର ସ୍ୱରୂପ
ଗୋପବେଶ ବେଣୁକର ନବକିଶୋର ନଟବର
ନର ଲୀଳାର ହୟ ଅନୁରୂପ ।
କୃଷ୍ଣେର ମଧୁର ରୂପ ଶୁନ ସନାତନ
ଯେ ରୂପେର ଏକକଣ ଡୁବାୟ ସବ ତ୍ରିଭୁବନ
ସର୍ବ ପ୍ରାଣୀ କରେ ଆକର୍ଷଣ ।
ଯୋଗମାୟା ଚିଚ୍ଛକ୍ତି ବିଶୁଦ୍ଧ ସତ୍ୟ ପରିଣତି
ତାର ଶକ୍ତି ଲୋକେ ଦେଖାଇତେ ।
ଏଇରୂପ-ରତନ ଭକ୍ତଗଣେର ଗୂଢ଼ଧନ
ପ୍ରକଟ କୈଲ ନିତ୍ୟ ଲୀଲା ହୈତେ ।
( ଚୈଃ ମଧ୍ୟ ୨୧ )

ସେମାନେ (ଶ୍ରୀକୃଷ୍ଣ ଓ ଗୋପୀଗଣ) ଗୋକୁଳରେ ପ୍ରକଟ ହୋଇ ନିଜ ନିଜ ସ୍ୱାଭାବିକ ପ୍ରେମରେ ପରସ୍ପର ପରସ୍ପର ପ୍ରତି ଆକୃଷ୍ଟ ହେଲେ, କିନ୍ତୁ ଏଥର ରସ ବିଶେଷର ଆସ୍ୱାଦନ ପାଇଁ ଶ୍ରୀକୃଷ୍ଣ ଯେ ସେମାନଙ୍କର ନିତ୍ୟ-କାନ୍ତ ଓ ସେମାନେ ଯେ ଶ୍ରୀକୃଷ୍ଣଙ୍କର ନିତ୍ୟକାନ୍ତା ଏହା ଯୋଗମାୟାବଳରେ କି ଶ୍ରୀକୃଷ୍ଣ, କି ଗୋପୀଗଣ କେହି ତାହା ଜାଣିପାରିଲେ ନାହିଁ । ଶ୍ରୀକୃଷ୍ଣଙ୍କର ଏହି ଇଚ୍ଛାକୁ ଶ୍ରୀକୃଷ୍ଣଦାସ କବିରାଜ ଏହି [redacted] ଯଥା—

ବୈକୁଣ୍ଠାଦ୍ୟେ ନାହିଁ ଯେ-ଯେ ଲୀଳାର ପ୍ରଚାର
ସେ-ସେ ଲୀଳା କରିବ ଯାତେ ମୋର ଚମତ୍କାର ।
ମୋ ବିଷୟେ ଗୋପୀଗଣେର ଉପପତିଭାବେ
ଯୋଗମାୟା କରିବେକ ଆପନ ପ୍ରଭାବେ ।
ଆମିହ ନା ଜାନି ତାହା-ନା ଜାନେ ଗୋପୀଗଣ
ଦୁହାଁର-ରୂପଗୁଣେ ଦୁହାଁର ନିତ୍ୟ ହରେ ମନ ।
ଧର୍ମ ଛାଡ଼ି ରାଗେ ଦୁହେଁ କରୟେ ମିଳନ
କଭୁ ମିଳେ, କଭୁ ନା ମିଳେ ଦୈବେର ଘଟନ ।
( ଚୈଃ ଆଦି ୪ )

ଶ୍ରୀକୃଷ୍ଣଙ୍କର ଯେତେବେଳେ ଲୀଳା ବିଶେଷରେ ଇଚ୍ଛା ହେଲା, ତାହାଙ୍କ ଅପୂର୍ଣ୍ଣ ରହିଲା । ଇଚ୍ଛାମୟଙ୍କର ଇଚ୍ଛାମାତ୍ରେ ଯୋଗମାୟା ତାହା ସମସ୍ତ ଯୋଗ କରାଇଦେଲେ । ଏହି ଯେ ଏଥିର ପରକୀୟା ଭାବରେ ପରସ୍ପର ମିଳନ ତାହା ଶ୍ରୀ ଯୋଗମାୟାଙ୍କ କୌଶଳରେ ସେହି ସ୍ୱକୀୟା ନିତ୍ୟପ୍ରେୟସୀ-ମାନଙ୍କଠାରେ ପରକୀୟାର ଆରୋପମାତ୍ର । ପ୍ରକୃତରେ ଶ୍ରୀକୃଷ୍ଣଙ୍କର ନିତ୍ୟ-ପ୍ରେୟସୀ ରାଧାଙ୍କୁ ଅନ୍ୟ କୌଣସି ପୁରୁଷର ସ୍ପର୍ଶ କରିବାର ଶକ୍ତି ନାହିଁ । ଶ୍ରୀ ଚନ୍ଦ୍ରବେଣାଦି ଗୋପମାନଙ୍କ ସହ ରାଧାଙ୍କର ବିବାହ ଏକ ଅଦ୍ଭୁତ କୌଶଳଦ୍ୱାରା ଆରୋପିତ ହୋଇଅଛି । ସେ ସମସ୍ତ ତତ୍ତ୍ୱମାନଙ୍କୁ ଜାଣିବାକୁ ଇଚ୍ଛାକଲେ ଶ୍ରୀ ଜୀବଗୋସ୍ୱାମୀଙ୍କ କୃତ ଗୋପାଳଚମ୍ପୂ ପାଠକରିବା ଆବଶ୍ୟକ । ଏତେ ପରକୀୟା ଭାବର ଆରୋପ କରାଇବାର ଉଦ୍ଦେଶ୍ୟ ଏହିକି, ଏଥିରେ ପୂର୍ବରାଗ ଅବସ୍ଥାରେ ଶ୍ରୀକୃଷ୍ଣ ମନେ କରୁଛନ୍ତି, ରାଧାଦି ଗୋପୀମାନେ ପରନାରୀ, ମୁଁ ଧାର୍ମିକପ୍ରବର ଶ୍ରୀମନ୍ ନନ୍ଦମହାରାଜାଙ୍କର ପୁତ୍ର, ମୋର ଚିତ୍ତ ମଧ୍ୟ ପାପ ପଥରେ କଦାପି ବିଚରଣ କରେନାହିଁ, କିମ୍ବା କରି-ବାର ସମ୍ଭାବନା ବି ନାହିଁ । ତଥାପି ମୁଁ କାହିଁକି ଏମାନଙ୍କ ରୂପଗୁଣରେ ବିମୁଗ୍ଧ ହୋଇ ଆପଣାକୁ ସ୍ଥିର ରଖି ପାରୁନାହିଁ । ଏମାନଙ୍କର ରୂପଗୁଣ ଯେ ମୋର ଧୈର୍ଯ୍ୟବୃତ୍ତିକୁ ସମୂଳେ ଉତ୍ପାଟନ କରି ଦେଉଛି । ସେତେବେଳେ ଶ୍ରୀ

ରାଧା ମଧ୍ୟ ସେହିପରି ଭାବୁଛନ୍ତି ମୁଁ କେବେ ପରିତ୍ୟାଗ କରିବି ଏହାଙ୍କର (ଶ୍ରୀକୃଷ୍ଣଙ୍କ) ନାମ, ରୂପ ଓ ଗୁଣରେ ଏତେ ଅନୁରାଗ କାହିଁକି ? କୁଳମର୍ଯ୍ୟାଦା, ଜାତି-ମର୍ଯ୍ୟାଦା, ଧର୍ମମର୍ଯ୍ୟାଦା ଏ ସବୁ ଚିନ୍ତାର ମୋର ଯେ କିଛି ମାତ୍ର ରହୁନାହିଁ ଏବଂ ମୋହର ଅଟଳ ପାତିବ୍ରତ୍ୟକୁ ଟାଳି ଦେଉଅଛି । ମୋର ଏଭଳି ଅବସ୍ଥାରେ ମୃତ୍ୟୁ ବରଂ ଶ୍ରେୟସ୍କର । କିନ୍ତୁ ସ୍ୱାଭାବିକ ପ୍ରେମ ସେ ଉଭୟଙ୍କର ସମସ୍ତ ଧର୍ମଚିନ୍ତାକୁ ବୁଡ଼ାଇଦେଲା । ସେମାନେ ପରସ୍ପର ମିଳିବାପାଇଁ ଅତ୍ୟନ୍ତ ଉତ୍କଣ୍ଠା ବହନ କରିବାକୁ ଲାଗିଲେ । ଅଶନ ବସନ ସବୁ ସେମା-ନଙ୍କୁ ପିତା ଲାଗିଲା । ଦିବାନିଶି ପରସ୍ପର ପରସ୍ପରପାଇଁ ବ୍ୟାକୁଳ ହେଲେ । ନିଦ୍ରା ସେମାନଙ୍କ ଚକ୍ଷୁରୁ ଅପସାରିତ ହେଲା ଓ ସେମାନେ ଦିନ ଦିନ କୃଶ ହେବାକୁ ଲାଗିଲେ । ଯେତେବେଳେ ନିଜନିଜ ପ୍ରାଣପର୍ଯ୍ୟନ୍ତ ସେମାନଙ୍କୁ ପିତ ଲାଗିଲା, ସେତେବେଳେ ଅଘଟନ ଘଟନା ପଟୀୟସୀ ଯୋଗମାୟା କୌଶଳ କରିମେ ଉଭୟଙ୍କର ମିଳନ କରାଇଲେ । ମିଳନ ହେଲା ସତ୍ୟ, କିନ୍ତୁ, ଶ୍ରୀରାଧା ପରର ପତ୍ନୀ, ସତ୍‌କୁଳଲବ୍ଧ୍ୟ ନୃପକନ୍ୟା, ଶ୍ରୀକୃଷ୍ଣଙ୍କର ଏହି ଭାବ ସର୍ବଦା ରହିଲା ଓ ଶ୍ରୀରାଧା ମଧ୍ୟ ଭାବିଲେ ଶ୍ରୀକୃଷ୍ଣ ଯେ ମୋର ଜପ ତପ କିନ୍ତୁ ତଥାପି ପ୍ରାଣର ଏକମାତ୍ର ଗତି, ତାହାଙ୍କୁ କପଟ ସର୍ବଦା ପାଉଥିବି । ଅତଏବ ଦୁହିଁଙ୍କର ମିଳନରେ ନାନା ଅନ୍ତରାୟ ଥିବାରୁ ଦୁହିଁଙ୍କର ପରସ୍ପର ପ୍ରତି ପ୍ରେମ ଅତ୍ୟନ୍ତ ଗାଢ଼ ହେବାକୁ ଲାଗିଲା । ଗୋକୁଳରେ ଏହାହିଁ ପ୍ରେମୋତ୍କର୍ଷ । ଏ ପ୍ରେମ ପୂର୍ବାନୁରାଗରୁ ଉତ୍ପନ୍ନ ହୋଇ ସମ୍ଭୋଗ ଓ ବିପ୍ରଲମ୍ଭ ସମସ୍ତକାଳକୁ ବ୍ୟାପି ରହିଅଛି । କି ପୂର୍ବାନୁରାଗ, କି ସମ୍ଭୋଗ, କି ବିପ୍ରଲମ୍ଭ ସର୍ବସମୟରେହିଁ ଏ ପ୍ରେମବିଳାସର ବୈଚିତ୍ର୍ୟ ଅତୀବ ମନୋମୁଗ୍ଧକର । ଏହି ଗୋପୀପ୍ରେମର ଉତ୍କର୍ଷତା ଶ୍ରୀଲଶୁକଦେବ ଗୋସ୍ୱାମୀ ଶ୍ରୀମଦ୍‌ଭାଗବତର ଦଶମସ୍କନ୍ଧରେ ଉତ୍ତମରୂପେ ଦେଖାଇ ଅଛନ୍ତି । ଶ୍ରୀକୃଷ୍ଣସଖା ଉଦ୍ଧବ ମଥୁ-ରାରୁ ଗୋକୁଳକୁ ଆସି ପ୍ରେମଦଗ୍ଧା ଗୋପରମଣୀମାନଙ୍କର ଭାବ ଦେଖି ମୋହିତ ହୋଇଥିଲେ ଏବଂ ବ୍ରଜରେ ଗୁଳ୍ମଲତା ରୂପେ ଜନ୍ମ ନେବାର ପ୍ରାର୍ଥନା କରି କହିଥିଲେ, " ମୁଁ ଯେବେ ଏଠାରେ ଗୁଳ୍ମଲତା ହୁଏଁ, ଏ ମହା-

ଭାଗବତ ଗୋପରମଣୀମାନଙ୍କର ଉତ୍କର୍ଷର ଧ୍ୱନି ଜଣା ଉତ୍ତମ ରୂପେ ଉପରେ ପଡ଼ି ପାରିବ । ନାରଦଭକ୍ତିମାନେ ମଧ୍ୟ ଏ ଗୋପୀମାନଙ୍କର ମହିମା ନିଜ ନିଜ ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କଠାରେ ପ୍ରକାଶ କରିଅଛନ୍ତି । ମଥୁରା ନଗରସ୍ଥ ଶ୍ରୀକୃଷ୍ଣଭକ୍ତିମାନେ ମଧ୍ୟ ସଦ୍ଭକ୍ତି ହୋଇ ଗୋପୀମାନଙ୍କର ଅଭିରୁଚିର ପ୍ରଶଂସା କରିଅଛନ୍ତି । ମହାବୈକୁଣ୍ଠର ଅଧୀଶ୍ୱରୀ ଶ୍ରୀଲକ୍ଷ୍ମୀଠାକୁରାଣୀ ମଧ୍ୟ ଶ୍ରୀକୃଷ୍ଣଙ୍କର ବ୍ରଜଗୋପୀ-ମାନଙ୍କସହ ଅପୂର୍ବ ବିଳାସ ଦେଖି ମୁଗ୍ଧ ହୋଇ ଶ୍ରୀକୃଷ୍ଣଙ୍କୁ ପାଇବାଇଚ୍ଛାରେ ତପସ୍ୟା କରିଥିଲେ । ଅତଏବ ଏହି ଅତି ବଡ଼ ଗୋପୀପ୍ରେମ ସ୍ୱୟଂ ସରସ୍ୱତୀ ମଧ୍ୟ ବର୍ଣ୍ଣନରେ ଅକ୍ଷମ । ତହିଁରେ ପୁଣି ସକଳ କାନ୍ତାଗଣ ମଧ୍ୟରେ ଶିରୋମଣି ଶ୍ରୀ-ଶ୍ରୀ ରାଧିକାଙ୍କର ପ୍ରେମ ଯେ କେତେଦୂର ଉତ୍କୃଷ୍ଟ ତାହା ବୋଲିଯାଇ ନ ପାରେ । ଶ୍ରୀକୃଷ୍ଣ ରାସରଜନୀରେ ପ୍ରଥମେ ସମସ୍ତ ବ୍ରଜକାନ୍ତା-ମାନଙ୍କ ସହିତ ରାସବିଳାସ କରୁ କରୁ ସମସ୍ତଙ୍କଠାରେ ସମାନ ପ୍ରେମରେ ନିଜର ଅତ୍ୟନ୍ତ ପ୍ରେମବତୀ ଶ୍ରୀରାଧାଙ୍କର ପ୍ରେମର ଉତ୍କର୍ଷତା ତ ଜଗତ ଦେଖାଇବା ପାଇଁ, ଏହା ଭିନ୍ନ ସମସ୍ତ ଗୋପୀଙ୍କୁ ପରିତ୍ୟାଗପୂର୍ବକ ଏକା ରାଧାଙ୍କୁ ନେଇ ନାନା ରୂପ ବିଳାସ କରିବାକୁ ଲାଗିଲେ । ଅନ୍ୟ ସକଳ ଗୋପୀଙ୍କ ସହ ଯେତେବେଳେ ବିଳାସର ଶେଷ; ସେତେବେଳେହିଁ ଶ୍ରୀରାଧାଙ୍କ ସହ ବିଳାସର ପ୍ରକୃତ ପରିପାଟୀ ଆରମ୍ଭ । ଗୋଦାବରୀ ତୀରରେ ମହାପ୍ରଭୁ ଶ୍ରୀରାମାନନ୍ଦ ରାୟଙ୍କୁ ପଚାରିଥିଲେ, ରାସରେ ଶ୍ରୀକୃଷ୍ଣ ଯେ ରାଧାଙ୍କୁ ଏକା ନେଇ ଅନ୍ୟ ଗୋପୀମାନଙ୍କୁ ପରିତ୍ୟାଗପୂର୍ବକ ଶ୍ରୀରାଧାଙ୍କ ସହ ବିଳାସ କଲେ ସେ ତ ଅନ୍ୟ ଗୋପୀମାନଙ୍କୁ ଉପେକ୍ଷା କରି ଗୁପ୍ତରେ ନେଇଗଲେ । ଅତଏବ ସେ ପ୍ରେମ ସର୍ବୋତ୍କୃଷ୍ଟ ବୋଲିଯାଇ ନ ପାରେ । ତାହାଠାରୁ ବଳି କିଛି ଉଦାହରଣ ଦେଖାଇ ପାରିବ କି ? ଶ୍ରୀଲ ରାମରାୟ ଉତ୍ତର କଲେ "ପ୍ରଭୋ ! ଭବଦୀୟ କୃପାରୁ ସେଥିର ଉଦାହରଣ ମଧ୍ୟ ଦେଖାଉ ଅଛି, ଶୁଣିବା ହେଉନ୍ତୁ । ଏହା କହି ଶ୍ରୀ ଜୟଦେବ କୃତ ଗୀତ-ଗୋବିନ୍ଦରୁ ଶ୍ଳୋକମାନ ଉଦ୍ଧୃତ କରି ଦର୍ଶାଇଲେ । ଯଥା—

କଂସାରିରପି ସଂସାରବାସନାବଦ୍ଧଶୃଙ୍ଖଳାମ୍
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ । ଚୈ ମଧ୍ୟ—୮ ।

ଅର୍ଥାତ୍ ବସନ୍ତରାସରେ ଶ୍ରୀରାଧା ମାନପୂର୍ବକ ରାସ ଛାଡ଼ି ଚାଲି ଯାଇବାରୁ ଶ୍ରୀକୃଷ୍ଣଙ୍କର ଅନନ୍ୟ ଶତକୋଟି ଗୋପୀ ସଙ୍ଗରେ ରାସବିଳାସ ଅଲ୍ପ ସୁଖକର ବୋଧ ହେଲା ନାହିଁ । ସେ ସମସ୍ତ ଗୋପୀଙ୍କୁ ଛାଡ଼ି ଶ୍ରୀରାଧାଙ୍କୁ ଅନ୍ୱେଷଣ କରି ଯମୁନା ତଟ କୁଞ୍ଜରେ ବସି ବିଷାଦ କରିବାକୁ ଲାଗିଲେ । ଯଥା—

କ୍ରୋଧ କରି ରାସ ଛାଡ଼ି ଗେଲା ମାନ କରି
ତାଁରେ ନା ଦେଖିୟା ବ୍ୟାକୁଲ ହଇଲ ଶ୍ରୀହରି ।
ସମ୍ୟକ ବାସନା କୃଷ୍ଣେର ଇଚ୍ଛା ରାସଲୀଳା
ରାସଲୀଳା-ବାସନାତେ ରାଧିକା ଶୃଙ୍ଖଳା ।
ତାହାଁ ବିନୁ ରାସଲୀଳା ନାହିଁ ଭାୟ ଚିତ୍ତେ
ମଣ୍ଡଳୀ ଛାଡ଼ିୟା ଗେଲା ରାଧା ଅନ୍ୱେଷିତେ ।
ଇତସ୍ତତଃ ଭ୍ରମି କାହାଁ ରାଧା ନା ପାଇୟା
ବିଷାଦ କରେନ କାମ ବାଣେ ଖିନ୍ନ ହୟା ।
ଶତକୋଟି ଗୋପୀତେ ନହେ କାମ-ନିର୍ବାପଣ
ଇହାତେଇ ଅନୁମାନ ଶ୍ରୀରାଧିକାର ଗୁଣ ।

(ଚୈ ମଧ୍ୟ—୮ମ)

ଅତଏବ ଏ ସବୁରୁ ଦେଖାଗଲା ଯେ ଗୋପୀପ୍ରେମ ସର୍ବକାନ୍ତା ପ୍ରେମଠାରୁ ଉତ୍କୃଷ୍ଟ ଓ ରାଧାପ୍ରେମ ସେଥିମଧ୍ୟରେ ଉତ୍କୃଷ୍ଟତମ । ଏହା ଅତୀବ ନିର୍ମଳ । ଏହାକୁ କାମର ଗନ୍ଧମାତ୍ର ସ୍ପର୍ଶ କରି ନାହିଁ । ଶ୍ରୀକୃଷ୍ଣଙ୍କର ସୁଖହିଁ ଏହି ସମସ୍ତ ପ୍ରେମର ତାତ୍ପର୍ଯ୍ୟ ।

ସେହି ଅତି ନିର୍ମଳ ରାଧାପ୍ରେମ ଆସ୍ୱାଦନ ପାଇଁ ଶ୍ରୀରାଧାଙ୍କର ଭାବ ଘେନି ଗୌରଚନ୍ଦ୍ରଙ୍କର ଏ ଅବତାର ଏବଂ ସେହି ମୁଖ୍ୟବାଞ୍ଛା ସେ ଏହି ଶ୍ରୀ ପୁରୁଷୋତ୍ତମରେ ସମ୍ୟକରୂପେ ପୂର୍ଣ୍ଣ କରିଥିଲେ ।

ପ୍ରଭୁର ଯେ କପଟଭଙ୍ଗରେ ନାନା ଆସ୍ୱାଦନ କରିଥିଲେ ତାହାର ବିବରଣ ଭକ୍ତିମାନ ଶ୍ରୀଲ କୃଷ୍ଣଦାସ କବିରାଜ ଶ୍ରୀ ଚୈତନ୍ୟଚରିତାମୃତରେ ସ୍ଥାନେ ସ୍ଥାନେ ଅଙ୍କନ କରି ରଖି ଯାଇଅଛନ୍ତି । ସେଥିରୁ ଯତ୍କିଞ୍ଚିତ୍ ସହୃଦୟ ପାଠକମାନଙ୍କୁ ଉପହାର ଦେଲୁ । ଯଥା—

ଶେଷ ଯେ ରହିଲ ପ୍ରଭୁର ଦ୍ୱାଦଶ ବତ୍ସର
କୃଷ୍ଣର ବିରହ ସ୍ଫୁର୍ତ୍ତି ହୁଏ ନିରନ୍ତର ।
ଶ୍ରୀ ରାଧିକାର ଚେଷ୍ଟା ଯେସନ୍ତ ଉଦ୍ଧବ ଦର୍ଶନେ
ଏଇମତ ଦଶା ପ୍ରଭୁର ହୁଏ ରାତ୍ରିଦିନେ ।

ନିରନ୍ତର ହୁଏ ପ୍ରଭୁର ବିରହ ଉନ୍ମାଦ
ଭ୍ରମମୟ ଚେଷ୍ଟା ସଦା-ପ୍ରଳାପମୟ ବାଦ ।
ରୋମକୂପେ ରକ୍ତୋଦ୍ଗମ, ଦନ୍ତସବ ହାଲେ
କ୍ଷଣେ ଅଙ୍ଗ କ୍ଷୀଣ ହୁଏ କ୍ଷଣେ ଅଙ୍ଗ ଫୁଲେ ।

ଗମ୍ଭୀରା-ଭିତରେ ରାତ୍ରେ ନାହିଁ ନିଦ୍ରା ଲବ
ଭିତ୍ତ୍ୟେ ମୁଖ-ଶିର ଘଷେ, କ୍ଷତ ହୁଏ ସବ ।
ତିନଦ୍ୱାରେ କପାଟ, ପ୍ରଭୁ ଯାଆନ୍ତି ବାହାରେ
କଭୁ ସିଂହଦ୍ୱାରେ ପଡ଼େ, କଭୁ ସିନ୍ଧୁନୀରେ ।
ଚଟକପର୍ବତ ଦେଖି ଗୋବର୍ଦ୍ଧନ ଭ୍ରମେ
ଧାଇଁଧା ଚଲେ ଆର୍ତ୍ତନାଦେ କରିଯା କ୍ରନ୍ଦନେ ।
ଉପବନୋଦ୍ୟାନ ଦେଖି ବୃନ୍ଦାବନ ଜ୍ଞାନ
ତାହାଁ ଯାଇ ନାଚେ ଗାଏ, କ୍ଷଣେ ମୂର୍ଚ୍ଛା ଯାନ ।
କାହାଁ ନାହିଁ ଶୁନି ଯେଇ ଭାବେର ବିକାର
ସେଇ ଭାବ ହୁଏ ପ୍ରଭୁର ଶରୀରେ ପ୍ରଚୁର ।
ହସ୍ତ-ପଦେର ସନ୍ଧି ଯତ ବିତସ୍ତି ପ୍ରମାଣେ
ସନ୍ଧି ଛାଡ଼ି ଭିନ୍ନ ହୁଏ ଚର୍ମ୍ମ ରହେ ସ୍ଥାନେ ।

ହସ୍ତପଦ ଶିରସବ ଶରୀର ଭିତରେ
ପ୍ରବିଷ୍ଟହସ୍ତ—କୂର୍ମ ରୂପ ଦେଖିଲେ ପ୍ରଭୁର ।
ଏଇମତ ଅଦ୍ଭୁତ ଭାବ ଶରୀରେ ପ୍ରକାଶ,
ମନେତେ ଶୂନ୍ୟତା-ବାକ୍ୟେ ହାହା ହୁତାଶ ।
କାହାଁ କରୋଁ କାହାଁ ପାଉଁ ବ୍ରଜେନ୍ଦ୍ରନନ୍ଦନ
କାହାଁ ମୋର ପ୍ରାଣନାଥ ମୁରଲୀବଦନ ।
କାହାଁରେ କହିବ କେବା ଜାନେ ମୋର ଦୁଃଖ,
ବ୍ରଜେନ୍ଦ୍ରନନ୍ଦନ-ବିନୁ ଫାଟେ ମୋର ବୁକ ।

ମହାପ୍ରଭୁ ଏହିରୂପ ଭାବରେ ସତତ ବିହ୍ୱଳ । କେତେବେଳେ କାନ୍ଦୁଛନ୍ତି, କେତେବେଳେ ବସି ତଳେ ଗାର କାଟୁଛନ୍ତି, ଯଥା—

ତାହାଁହେତେ ଘରେ ଆସି    ମାଟିର ଉପରେ ବସି
ନଖେ କରେ ପୃଥିବୀ ଲିଖନ,
ହା ହା କାହାଁ ବୃନ୍ଦାବନ,    କାହା ଗୋପେନ୍ଦ୍ର ନନ୍ଦନ
କାହାଁ ସେଇ ବଂଶୀବଦନ ।
କାହାଁ ସେ ତ୍ରିଭଙ୍ଗଠାମ,    କାହାଁ ସେଇ ବେଣୁଗାନ
କାହା ସେଇ ଯମୁନା ପୁଲିନ,
କାହାଁ ସେ ରାସବିଳାସ,    କାହାଁ ନୃତ୍ୟ ଗୀତ ହାସ,
କାହାଁ ପ୍ରଭୁ ମଦନମୋହନ ।    (ଚୈ-ମଧ୍ୟ ୧୩)

ନାନାଭାବ ଉଦ୍‌ଗମରେ ମହାପ୍ରଭୁଙ୍କର ଦଶଦଶା ଉପସ୍ଥିତ ହୋଇଅଛି ଏବଂ ସେ ରାତ୍ରଦିନ—ସ୍ୱରୂପ ଓ ରାମାନନ୍ଦଙ୍କ ସଙ୍ଗେ ଶ୍ରୀକୃଷ୍ଣଲୀଳା ଆସ୍ୱାଦନ କରୁଅଛନ୍ତି, ଯଥା—

ଚଣ୍ଡୀଦାସ ବିଦ୍ୟାପତି    ରାୟେର ନାଟକ-ଗୀତି
କର୍ଣ୍ଣାମୃତ ଶ୍ରୀ ଗୀତଗୋବିନ୍ଦ
ସ୍ୱରୂପ ରାମାନନ୍ଦସନେ    ମହାପ୍ରଭୁ ରାତ୍ରଦିନେ
ଗାୟଶୁନେ ପରମ ଆନନ୍ଦ ( ଚୈଃ ମଧ୍ୟ—୨ )

ମହାପ୍ରଭୁଙ୍କର ଦିବ୍ୟୋନ୍ମାଦ ଦଶା ବର୍ଣ୍ଣନାର ଅତୀତ । ଦିନେ ସେ ଗମ୍ଭୀରା ମଧ୍ୟରେ ଶୋଇଅଛନ୍ତି, ତିନିପରସ୍ତ ଚାବିଦେଲେ ବାହାରକୁ ଯିବାର କଥା । ସେ ତିନି ପରସ୍ତର ଦ୍ୱାରମାନ ମଧ୍ୟ କିଳା ହୋଇଅଛି କିନ୍ତୁ ଗୋବିନ୍ଦ ଓ ଶ୍ରୀସ୍ୱରୂପଗୋସାଇଁ ଉଠି ଦେଖନ୍ତି, ମହାପ୍ରଭୁ ଗମ୍ଭୀରା ମଧ୍ୟରେ ନାହାନ୍ତି । ତିନିଦ୍ୱାର ପୂର୍ବପରି ବନ୍ଦ ରହିଅଛି । ସକଳେ ବ୍ୟସ୍ତ ହୋଇ ମଶାଲ ଜାଳି ମହାପ୍ରଭୁଙ୍କୁ ଚାରିଆଡ଼େ ଖୋଜିବାକୁ ଲାଗିଲେ । ସେ ଘରମଧ୍ୟରୁ କେହି ଯାଇ ଦେଖିଲେ ଶ୍ରୀ ଜଗନ୍ନାଥଦେବଙ୍କ ଦେଉଳର ସିଂହଦ୍ୱାରର ଉତ୍ତର ପଟରେ ମହାପ୍ରଭୁ ଅଚେତ ଅବସ୍ଥାରେ ପଡ଼ିଅଛନ୍ତି । ଅସ୍ଥି ସନ୍ଧି ଛୁଟି ତାହାଙ୍କର ଶ୍ରୀଅଙ୍ଗ ୫/୬ ହାତ ଲମ୍ବା ହୋଇ ଯାଇଅଛି । ଶ୍ରୀମୁଖରୁ ଲାଳ ଓ ଫେଣ ବାହାରୁଅଛି । ଯଥା—

ପ୍ରଭୁ ପଡ଼ିଅଛେ ଦୀର୍ଘ-ହାଥ ପାଞ୍ଚ ଛଅ,
ଅଚେତନ ଦେହ, ନାସାୟ ଶ୍ୱାସ ନାହିଁ ବୟ ।

ଏକେକ ହସ୍ତ-ପଦ ଦୀର୍ଘ ତିନ ତିନ ହାଥ
ଅସ୍ଥି ଗ୍ରନ୍ଥି ଭିନ୍ନ ଚର୍ମ୍ମ ଅଛେମାତ୍ର ତା'ତ ।

ହସ୍ତ ପାଦ ଗ୍ରୀବା କଟି ଅସ୍ଥି ସନ୍ଧି ଯତ
ଏକେକ ବିତସ୍ତି ଭିନ୍ନ ହଇୟାଛେ ତତ ।

ଚର୍ମ୍ମମାତ୍ର ଉପରେ ସନ୍ଧିର ଅଛେ ଦୀର୍ଘ ହଞା
ଦୁଃଖିତ ହଇଲା ସବେ ପ୍ରଭୁରେ ଦେଖିଯା ।

( ଚୈଃ ଅନ୍ତ୍ୟ ୧୪ ,

ଶ୍ରୀଲସ୍ୱରୂପ ଗୋସାଇଁ ମହାପ୍ରଭୁଙ୍କ କର୍ଣ୍ଣରେ ଶ୍ରୀ କୃଷ୍ଣନାମ ଶୁଣାନ୍ତେ ସେ ଚୈତନ୍ୟ ପାଇ ଉଠି ବସିଲେ ଓ ଶ୍ରୀଅଙ୍ଗ ସ୍ୱାଭାବିକ ଅବସ୍ଥା ଧାରଣ କଲା । ଏରୂପ ଅଦ୍ଭୁତ ବିକାର ଜଡ଼ବିଜ୍ଞାନର ଗୋଚର ବହିର୍ଭୂତ । ବିଜ୍ଞ-ମତ ସାଧାରଣ ଭକ୍ତଙ୍କ ପ୍ରେମବିକାରଜନିତ ଅବସ୍ଥାର ବୈଜ୍ଞାନିକ କାରଣ

ନିରୂପଣ କରିବାକୁ ସମର୍ଥ ହେବ ନାହିଁ, ଏତ ସ୍ୱୟଂ ଭଗବାନଙ୍କର ପ୍ରେମ ବିକାର । ତତ୍ତ୍ୱଜ୍ଞଙ୍କର ପ୍ରକୃତ ଅବସ୍ଥା ଜଡବିଜ୍ଞାନର ଅଗୋଚର ।

ଅନ୍ୟ ଏକ ସମୟରେ ସାମାନ୍ୟ ବାଲୁକାସ୍ତୂପ ଦେଖି ତାହାକୁ ଗିରି-ରାଜ ଶ୍ରୀଗୋବର୍ଦ୍ଧନ ମନେକରି ମହାପ୍ରଭୁ ଦଉଡ଼ିବାକୁ ଲାଗିଲେ । ସେ ଦିନ ମହାପ୍ରଭୁଙ୍କର ଯେ ପ୍ରେମବିହ୍ୱଳ ଅବସ୍ଥା ତାହା ଶ୍ରୀ କବିରାଜ ଗୋସାଇଁଙ୍କ ଭାଷାରେ ପାଠକେ ଆସ୍ୱାଦନ କରନ୍ତୁ ।

ପ୍ରଥମେ ଚଳିଲା ପ୍ରଭୁ ଯେନ ବାୟୁଗତି
ସ୍ତମ୍ଭଭାବ ପଥେ ହୈଲ-ଚଳିତେ ନାହି ଶକ୍ତି ।
ପ୍ରତି ରୋମକୂପେ ମାଂସ ବ୍ରଣେର ଆକାର
ତାର ଉପରେ ରୋମୋଦ୍ଗମ କଦମ୍ବ ପ୍ରକାର ।
ପ୍ରତି ରୋମେ ପ୍ରସ୍ୱେଦ ପଡ଼େ ରୁଧିରେର ଧାର,
କଣ୍ଠ ଘର୍ଘର, ନାହିଁ ବର୍ଣ୍ଣେର ଉଚ୍ଚାର ।
ଦୁଇ ନେତ୍ର ଭରି ଅଶ୍ରୁ ବହୟେ ଅପାର
ସମୁଦ୍ରେ ମିଳିଲ ଯେନ ଗଙ୍ଗା-ଯମୁନା-ଧାର ।
ବୈବର୍ଣ୍ଣ୍ୟେ ଶଙ୍ଖ ପ୍ରାୟ ଶ୍ୱେତ ହୈଲ ଅଙ୍ଗ,
ତବେ କମ୍ପ ଉଠେ ଯେନ ସମୁଦ୍ର ତରଙ୍ଗ ।
କାଁପିତେ କାଁପିତେ ପ୍ରଭୁ ଭୂମେତେ ପଡ଼ିଲା,
ତବେତ ଗୋବିନ୍ଦପ୍ରଭୁର ନିକଟେ ଆଇଲା ।(ଚୈଃ ଅନ୍ତ୍ୟ ୧୪)

ଶ୍ରୀଗୋବିନ୍ଦ ଜଳସେଚନ କରି ବିଞ୍ଚିବାକୁ ଲାଗିଲେ । ମହାପ୍ରଭୁ କିଞ୍ଚିତ୍ ଚୈତନ୍ୟ ଲାଭକରି ଅର୍ଦ୍ଧବାହ୍ୟ ଦଶାରେ ସ୍ୱରୂପଗୋସାଇଁଙ୍କୁ ପଚାରୁ ଅଛନ୍ତି, "ଶ୍ରୀକୃଷ୍ଣ ଗୋବର୍ଦ୍ଧନରେ ଚଢ଼ି ବେଣୁ ବଜାଉଥିଲେ, ମଧୁର ବେଣୁନାଦ ଶ୍ରବଣକରି ଶ୍ରୀ ରାଧାଠାକୁରାଣୀ ସେଠାକୁ ଆସିଲେ । ତାହାଙ୍କୁ ଦେଖି ଶ୍ରୀକୃଷ୍ଣ ଦେବ କନ୍ଦରରେ ପ୍ରବେଶ କଲେ ଓ ଯେମାନଙ୍କର ଦ୍ରିସ୍ତ

ସଖିମାନେ ମୋତେ ଫୁଲ ତୋଳିବାକୁ ଅଦେଶ କଲେ । କିନ୍ତୁ ମୁଁ ଫୁଲ ନ ତୋଳିବାରୁ ତୁମ୍ଭେମାନେ କାହିଁ ମୋତେ ଧରି ଏଠାକୁ ନେଇ ଆସିଲ ମୁଁ ଯେ ଶ୍ରୀକୃଷ୍ଣଲୀଳା ଦର୍ଶନରୁ ବଞ୍ଚିତ ହେଲି" । ଏହାକହି ମହାପ୍ରଭୁ କାନ୍ଦିବାକୁ ଲଗିଲେ ଓ ଗୋପୀଭାବରେ ମୂର୍ଚ୍ଛିତ ହେଲେ ।

ଏହାପରେ ବିରହ ବିହ୍ୱଳ ମହାପ୍ରଭୁଙ୍କର ପ୍ରାଣ ଓଷ୍ଠଗତ ଛଟପଟ କରୁଥାଏ । ସେ କେତେବେଳେ ସ୍ୱରୂପ ଓ ରାମାନନ୍ଦଙ୍କ ଗଳା ଧରି କାନ୍ଦୁଅଛନ୍ତି, କେତେବେଳେ କାନ୍ଦି କାନ୍ଦି ଗୀତ ଗାଉଅଛନ୍ତି । ଯଥା—

କୃଷ୍ଣ-ରୂପ ଶବ୍ଦସ୍ପର୍ଶ,— ସୌରଭ୍ୟ ଅଧର ରସ
ଯାର ମାଧୁର୍ଯ୍ୟ କହନ ନା ଯାୟ
ଦେଖି ଲୋଭୀ ପଞ୍ଚଜନ ଏକ ଅଶ୍ୱ ମୋର ମନ୍
ଚଢ଼ି ପଞ୍ଚ ପାଞ୍ଚଦିଗେ ଯାୟ ।
ସଖି ହେ ! ଶୁନ ମୋର ଦୁଃଖେର କାରଣ ।
ମୋର ପଞ୍ଚେନ୍ଦ୍ରିୟଗଣ ମହାଲମ୍ପଟ ଦସ୍ୟୁଗଣ
ସଭେ କହେ ହର ପରଧନ ।
ଏକ ଅଶ୍ୱ ଏକକ୍ଷଣେ ପାଞ୍ଚ ପାଞ୍ଚ ଦିଗେ ଟାନେ
ଏକ ମନ କୋନ୍ ଦିଗେ ଯାୟ !
ଏକ କାଲେ ସଭେ ଟାନେ ଗେଲ ଘୋଡାର ପରାଣେ
ଏହ ଦୁଃଖ ସହନ ନା ଯାୟେ ।
ଇନ୍ଦ୍ରିୟେ ନା କରି ରୋଷ, ଇହା ସଭାର କାହାଁ ଦୋଷ
କୃଷ୍ଣ ରୂପାଦି ମହା ଆକର୍ଷଣ
ରୂପାଦି ପାଞ୍ଚ ପାଞ୍ଚ ଟାନେ ଗେଲ ଘୋଡାର ପରାଣେ
ମୋର ଦେହେ ନା ରହେ ଜୀବନ ।
କୃଷ୍ଣ ରୂପାମୃତ ସିନ୍ଧୁ, ତାହାର ତରଙ୍ଗବିନ୍ଦୁ,
ଏକବିନ୍ଦୁ ଜଗତ ଡୁବାୟ,

ତ୍ରିଜଗତେ ଯତ ନାରୀ, ତାର ଚିତ୍ତ ଉଚ୍ଚଗିରି,
ତାହା ଡୁବାୟ ଆଗେ ଉଠେ ଧାୟ ।
କୃଷ୍ଣେର ବଚନ ମାଧୁରୀ, ନାନା ରସ-ନର୍ମ-ଧାରୀ,
ତାର ଅନ୍ୟାୟ କଥନ ନା ଯାୟ,
ଜଗତେର ନାରୀର କାନେ, ମାଧୁରୀ ଗୁଣେ ବାନ୍ଧି ଟାନେ,
ଟାନା ଟାନି କାନେର ପ୍ରାଣ ଯାୟ ।
କୃଷ୍ଣ ଅଙ୍ଗ ସୁଶୀତଳ, କି କହିବ ତାର ବଲ,
ଛଟାୟ ଜିନେ କୋଟୀନ୍ଦୁ ଚନ୍ଦନ,
ସଶୈଳ ନାରୀର ବକ୍ଷ, ତାହା ଆକର୍ଷିତେ ଦକ୍ଷ
ଆକର୍ଷୟେ ନାରୀଗଣମନ ।
କୃଷ୍ଣାଙ୍ଗ-ସୌରଭ୍ୟଭର, ମୃଗମଦ-ମଦହର,
ନୀଳୋତ୍ପଳେର ହରେ ଗର୍ବଧନ,
ଜଗତ ନାରୀର ନାସା, ତାର ଭିତର କରେ ବାସା,
ନାରୀଗଣେର କରେ ଆକର୍ଷଣ ।
କୃଷ୍ଣେର ଅଧରାମୃତ, ତାତେ କର୍ପୂର ମନ୍ଦସ୍ମିତ,
ସ୍ୱମାଧୁର୍ଯ୍ୟେ ହରେ ନାରୀମନ ।
ଛଡାୟ ଅନ୍ୟତ୍ର ଲୋଭ, ନା ପାଇଲେ ମନେ କ୍ଷୋଭ,
ବ୍ରଜନାରୀଗଣେର ମୂଲଧନ ।
ଏତ କହି ଗୌରହରି, ଦୁ ଜନେର କଣ୍ଠେ ଧରି,
କହେ—ଶୁନ ସ୍ୱରୂପ ରାମରାୟ,
କାହାଁ କରୋଁ କାହାଁ ଯାଙ୍‌, କାହାଁ ଗେଲେ କୃଷ୍ଣ ପାଙ୍‌
ଦୋହେଁ ମୋରେ କହେ ସେ ଉପାୟ ।

ମହାପ୍ରଭୁଙ୍କର ଏରୂପ ବିହ୍ୱଳ ଅବସ୍ଥା ଦେଖି ଶ୍ରୀଲସ୍ୱରୂପ ଓ ଶ୍ରୀଲରାମାନନ୍ଦଙ୍କର ଚିନ୍ତାର ସୀମା ନାହିଁ । କୌଣସି ପ୍ରକାରେ ଯେ ତାହାଙ୍କୁ ଶାନ୍ତ କରାଇବେ ଏହାର ଉପାୟାନ୍ତର ନ ପାଇ ତାହାଙ୍କର ସ୍ୱଭ-

ଅନୁଯାୟୀ ଗୀତ ଗାନ କରନ୍ତି ଓ ଶ୍ଳୋକ ପାଠ କରନ୍ତି । ସେମାନ ତପ୍ତ-ଇକ୍ଷୁଚର୍ବଣପରି ପୀଡ଼ାଦାୟକ ହେଲେ ମଧ୍ୟ ମହାପ୍ରଭୁଙ୍କର ତୃପ୍ତି ସମ୍ପାଦନ କରେ ।

ଏକଦିନ ଜ୍ୟୋତ୍ସ୍ନାବତୀ ରଜନୀ, ମହାପ୍ରଭୁ ଏକା ଭ୍ରମଣ କରୁ କରୁ ସମୁଦ୍ରତୀରରେ ଉପସ୍ଥିତ ହେଲେ । ଦେଖିଲେ ଯେ ଉପରେ ହେଉଛି ମାଡ଼ି ଆସୁଅଛି; ତହିଁରେ ଚନ୍ଦ୍ର କିରଣ ପଡ଼ି ସେ ସମସ୍ତ ଝଲମଲ କରୁଅଛି । ସେ ସମୁଦ୍ର ତରଙ୍ଗମାନଙ୍କର ଅପୂର୍ବ ଶୋଭା ସନ୍ଦର୍ଶନ କରି ମହାପ୍ରଭୁଙ୍କ ହୃଦୟରେ ଯମୁନାର ଶୋଭା ସ୍ମରଣ ହେଲା । ସେ ହୃଦୟରେ ଯମୁନା ଭ୍ରମରେ ସମୁଦ୍ର ମଧ୍ୟକୁ ଡେଇଁ ପଡ଼ିଲେ । ଏଣେ ସ୍ୱରୂପାଦି ପାର୍ଷଦଗଣ ମହାପ୍ରଭୁଙ୍କୁ ନ ପାଇ ଗୃହଅଭ୍ୟନ୍ତରେ ଖୋଜିବାକୁ ଲାଗିଲେ । ଖୋଜୁଁ ଖୋଜୁଁ ରଜନୀ ଅତି ଶେଷ ହେବାକୁ ବସିଲା, ମହାପ୍ରଭୁଙ୍କର କିଛି ମାତ୍ର ସନ୍ଧାନ ନାହିଁ ।

ସେତେବେଳେ ସ୍ୱରୂପାଦିଙ୍କର ଯେଉଁ ମାନସିକ ଅବସ୍ଥା ଉପସ୍ଥିତ ହୋଇଥିଲା ତାହା ସେମାନେହିଁ ଜାଣନ୍ତି, ଅପର କେଏ ତାହା ଅନୁମାନ କରି ପାରିବ । ପରେ ପଥମଧ୍ୟରେ ସେମାନେ ଏକ ଜାଲୁଆର ଭେଟ ପାଇଲେ । ସେ ଥର ଥର କମ୍ପୁଅଛି, କାନ୍ଦୁଅଛି ଓ ନାଚୁଅଛି । ସ୍ୱରୂପ ଗୋସାଇଁ ତାହାକୁ ପଚାରିଲେ, "ତୁ ଏଣେ ମହାପ୍ରଭୁଙ୍କୁ ଦେଖିଛୁ କି ? ଏପରି ପାଗଳପରି ହେଉଛୁ କାହିଁକି ?" ଜାଲୁଆ କହିଲା "ମୁଁ ତ ଏଣେ କୌଣସି ମନୁଷ୍ୟଙ୍କୁ ଦେଖି ନାହିଁ, ଜାଲ ପକାଉଥିଲି, ଏକ ମୃତଶବ ମୋ ଜାଲରେ ପଡ଼ିଲା । ବଡ଼ମତ୍ସ୍ୟ ମନେ କରି ମୁଁ ଅତି ଆନନ୍ଦରେ ଜାଲ ଉଠାଇ ଦେଖେଁ ତାହା ମତ୍ସ୍ୟ ନୁହେଁ ଏକ ମନୁଷ୍ୟର ଶବ । ମୁଁ ଜାଲରୁ ସେ ଶବକୁ ଖସାଇବା ବେଳେ, ସେ ଶବ ଦେହ ସ୍ପର୍ଶ ମାତ୍ର— ସେଥି ମଧ୍ୟରେ ଅବସ୍ଥିତ ଥିବା ଏକ ଭୂତ ମୋ ହୃଦୟ ମଧ୍ୟରେ ପ୍ରବେଶ କଲା । ତେଣୁ ମୁଁ ଭୟରେ ଏପରି କମ୍ପୁଅଛି ଓ ପାଗଳପରି ହେଉଅଛି ।

ସେ ମୃତଶରୀରେ ଭୂତ ଜମା ବ୍ରହ୍ମଦୈତ୍ୟ ପ୍ରବେଶ କରି ଅଛି ମୁଁ କହି ନ ପାରେଁ, ତେଣୁ ସେ ଶବ ୫ । ୬ ହାତ ଲମ୍ବା ହୋଇ ଯାଇଅଛି ଓ ଅସ୍ଥି ଖଣ୍ଡ ଖସିଯାଇ ଚର୍ମ ଲଡ଼ବଡ଼ କରୁଅଛି । ସେ ଶବରୁ ପୁଣି ଗଁ ଗଁ ଶବ୍ଦ ବାହାରୁ ଅଛି । ଶ୍ରୀନୃସିଂହ ଦେବଙ୍କ ନାମ ସ୍ମରଣରେ ମୋତେ ଭୂତ ପ୍ରେତ ଲାଗନ୍ତି ନାହିଁ କିନ୍ତୁ ଏ ଭୂତ ନୃସିଂହ ନାମରେ ଦ୍ୱିଗୁଣ ବଳ ପ୍ରକାଶ କରି ମୋତେ ଦୁଃଖ ଦେଉଅଛି । ମୁଁ ମରିଗଲେ ମୋର କୁଟୁମ୍ବ ପୋଷିବ କିଏ, ମୁଁ ଭଲହେବା ପାଇଁ ଭଲ ଓଝାଠାକୁ ଯାଉଅଛି ।" ଜାଲୁଅର କଥାମାନ ଶୁଣି ଶ୍ରୀସ୍ୱରୂପଗୋସାଇଁ ବୁଝିପାରିଲେ; ଏ ସୌଭାଗ୍ୟବାନ ଜାଲୁଅ ନିଶ୍ଚୟ ମହାପ୍ରଭୁଙ୍କ ଶ୍ରୀଅଙ୍ଗ ସ୍ପର୍ଶ ପାଇଅଛି । ଏହା ଭାବି କହିଲେ, "ତୁମ୍ଭେ ଭୟ କରନା, ମୁଁ ଭୂତମନ୍ତ୍ର ଜାଣେ" ଏହା କହି ମନେ ମନେ ମନ୍ତ୍ର ପାଠକରି ଭାନ କରି ତାହାଙ୍କ ମସ୍ତକରେ ତିନି ଚାପୁଡ଼ା ମାରିଲେ ଏବଂ କହିଲେ ଆଉ ଡରନା, ଭୂତ ପଳାଇ ଗଲାଣି । ସେ କିଞ୍ଚିତ୍ ସୁସ୍ଥ ହୁଅନ୍ତେ ସ୍ୱରୂପ କହିଲେ, ତୁମ୍ଭେ ଯାହାକୁ ଜାଲରେ ଉଠାଇଅଛ ସେ ଭୂତ ବା ଶବ ନୁହନ୍ତି, ଅମ୍ଭର ମହାପ୍ରଭୁ ଶ୍ରୀକୃଷ୍ଣଚୈତନ୍ୟ । ତେତେବେଳେ ସେ ଜାଲୁଅ ସ୍ୱରୂପଙ୍କୁ ମହାପ୍ରଭୁ ଜାଲ ମଧ୍ୟରେ ପଡ଼ି ରହିଥିବା ସ୍ଥାନକୁ ନେଲା । ସ୍ୱରୂପ ଯାଇ ଦେଖିଲେ

ଭୂମେ ପଡ଼ିଅଛେ [illegible]
ଜଲେ [illegible] ତନୁ [illegible]
ଅ [illegible]
ଦୂର ପଥ ଉଠାଇ [illegible]
([illegible])

ଶ୍ରୀସ୍ୱରୂପଗୋସାଇଁ ମହାପ୍ରଭୁଙ୍କ ଜାଲ ମଧ୍ୟରୁ ବାହାର କରାଇ ଶ୍ରୀଅଙ୍ଗରୁ ବାଲି ଝାଡ଼ି ଆର୍ଦ୍ର କୌପୀନ ଦୂର କରି ଶୁଷ୍କ କୌପୀନ ପିନ୍ଧାଇ ବହିର୍ବାସ ଉପରେ ଶୁଆଇଲେ, ଏବଂ ସମସ୍ତେ ମିଳି ଉଚ୍ଚ ସଂକୀର୍ତ୍ତନ କରି-

ବାହ୍ୟ ଲାଗିଲେ । ସେତେବେଳେ ମହାପ୍ରଭୁ ହୁଁକାର କରି ଉଠି ବସିଲେ ଏବଂ ଉଠିବାମାତ୍ର ଅର୍ଦ୍ଧ ସହିତ ସ୍ୱାଭାବିକ ଅବସ୍ଥା ଧାରଣ କଲେ । ମହାପ୍ରଭୁ ଅର୍ଦ୍ଧବାହ୍ୟ ଦଶାରେ ପ୍ରଳାପ କରିବାକୁ ଲାଗିଲେ । ସେ ପ୍ରଳାପଟି ଶ୍ରୀ କବିରାଜ ଗୋସାଇଁଙ୍କ ହୃଦୟସ୍ପର୍ଶୀ ଭାଷାରେ ନିମ୍ନରେ ଉଦ୍ଧୃତ କଲି । ସେ ଛନ୍ଦଟି କିରୂପ ଚମତ୍କାର ପାଠକେ ତାହା ଅନୁଭବ କରନ୍ତୁ । ଯଥା—

'କାଳିନ୍ଦୀ ଦେଖିୟା ଆମି ଗେଲାଙ ବୃନ୍ଦାବନ,
ଦେଖି-ଜଳ କ୍ରୀଡ଼ା କରେ ବ୍ରଜେନ୍ଦ୍ର ନନ୍ଦନ ।
ରାଧିକାଦି ଗୋପୀଗଣ ସଙ୍ଗେ ଏକତ୍ର ମେଲି ।
ଯମୁନାର ଜଲେ ମହାରଙ୍ଗେ କରେ କେଲି ।
ତୀରେ ରହି ଦେଖି ଆମି ସଖୀଗଣ-ସଙ୍ଗେ ।
ଏକ ସଖୀ ସଖୀଗଣେ ଦେଖାୟ ସେ ରଙ୍ଗେ ।

ପଟ୍ଟବସ୍ତ୍ର ଅଲଙ୍କାରେ ସମର୍ପିୟା ସଖୀ କରେ
ସୂକ୍ଷ୍ମ ଶୁକ୍ଳ ବସ୍ତ୍ର ପରିଧାନ ।
କୃଷ୍ଣ ଲଞା କାନ୍ତାଗଣ କୈଲ ଜଲାବଗାହନ
ଜଲକେଲି ରଚିଲ ସୁଠାନ ।
ସଖି ହେ ! ଦେଖ କୃଷ୍ଣେର ଜଲକେଲି ରଙ୍ଗେ
କୃଷ୍ଣ ମତ୍ତକରିବର ଚଞ୍ଚଲ କରପୁଷ୍କର
ଗୋପୀଗଣ କରିଣୀର ସଙ୍ଗେ ।
ଆରମ୍ଭିଲ ଜଲ କେଲି ଅନ୍ୟୋନ୍ୟେ ଜଲ ଫେଲାଫେଲି
ହୁଡ଼ାହୁଡ଼ି ବର୍ଷେ ଜଲଧାର ।
ସବେ ଜୟ ପରାଜୟ ନାହି କିଛୁ ନିଶ୍ଚୟ
ଜଲଯୁଦ୍ଧ ବାଢ଼ିଲ ଅପାର ।
ବର୍ଷେ ସ୍ଥିର ତଡ଼ିଦ୍‌ଗଣ ସିଞ୍ଚେ ଶ୍ୟାମ ନବଘନ
ଘନ ବର୍ଷେ ତଡ଼ିତ ଉପରେ ।

ସଖିଗଣେର ନୟନ    ତୃଷିତ ଗୃତକଗଣ
ସେ ଅମୃତ ସୁଖେ ପାନ କରେ ।
ପ୍ରଥମେ ଯୁଦ୍ଧ ଜଳାଜଳି,    ତବେ ଯୁଦ୍ଧ କରାକରି
ତାର ପାଛେ ଯୁଦ୍ଧ ମୁଖାମୁଖି ।
ତବେ ଯୁଦ୍ଧ ହୃଦାହୃଦି,    ତବେ ହୈଲ ରଦାରଦି,
ତବେ ହୈଲ ଯୁଦ୍ଧ ନଖାନଖି ।
ସହସ୍ର କର ଜଲ ସେକେ    ସହସ୍ର ନେତ୍ରେ ଗୋପୀ ଦେଖେ
ସହସ୍ର ପାଦ ନିକଟ ଗମନେ
ସହସ୍ର ମୁଖ ଚୁମ୍ବନେ    ସହସ୍ର ବପୁ ସଙ୍ଗମେ
ଗୋପୀ ନର୍ମ ଶୁନେ ସହସ୍ର କାଣେ ।
କୃଷ୍ଣ ରାଧା ଲଞା ବଲେ    ଗେଲା କଣ୍ଠଦଘ୍ନଜଲେ
ଛାଡ଼ିଲ ତାହାଁ ଯାହାଁ ଅଗାଧ ପାନୀ ।
ତେହୋଁ କୃଷ୍ଣ କଣ୍ଠ ଧରି    ଭାସେ ଜଲେର ଉପରି
ଗଜୋତ୍ଖାତେ ଯୈଛେ କମଲିନୀ ।
ଯତ ଗୋପସୁନ୍ଦରୀ    କୃଷ୍ଣ ତତ ରୂପ ଧରି
ସଭାର ବସ୍ତ୍ର କରିଲ ହରଣେ ।
ଯମୁନା ଜଲ ନିର୍ମଲ    ଅଙ୍ଗ କରେ ଝଲମଲ
ସୁଖେ କୃଷ୍ଣ କରେ ଦରଶନେ ।
ପଦ୍ମିନୀଲତା ସଖୀଚଯ୍ୟେ    କୈଲ କାରୋ ସହାଯ୍ୟେ
ତାର ହସ୍ତେ ପତ୍ର ସମର୍ପିଲେ ।
କାହୋ ମୁକ୍ତକେଶ ପାଶ    ଆଗେ କୈଲ ଅଧୋବାସ
ସ୍ୱହସ୍ତେ କଞ୍ଚୁଲୀ କରିଲ ।
କୃଷ୍ଣେର କଲହ ରାଧା ସନେ    ଗୋପୀଗଣ ସେଇକ୍ଷଣେ
ହେମାବ୍ଜବନ ଗେଲା ଲୁକାଇତେ
ଆକଣ୍ଠ ବପୁ ଜଲେ ପୈଶେ    ମୁଖ ମାତ୍ର ଜଲେ ଭାସେ
ପଦ୍ମେ ମୁଖେ ନାରେ ଚିହ୍ନିତେ ।

ଏଥା କୃଷ୍ଣ ରାଧାସନେ     କେଳି ଯେ ଅଛିଲ ମନେ
ଗୋପୀଗଣ ଅନ୍ୱେଷିତେ ଗେଲ୍ ।
ତବେ ରାଧା ହୃଷ୍ଟମନ     ଜାନନ୍ତ୍ୱା ସଖିର ସ୍ଥିତ
ସଖିମଧ୍ୟେ ଅସିଣ୍ଟା ମିଳିଲ ।
ଯେନ ହେମାବ୍ଜ ଜଲେ ଭାସେ     ତତ ନୀଲାବ୍ଜ ତାର ପାଶେ
ଅଧି-ଅଧି କରନ୍ତେ ମିଳନ ।
ନୀଲାବ୍ଜେ ହେମାବ୍ଜେ ଠେକେ     ଯୁଦ୍ଧ ହୟେ ପ୍ରତ୍ୟେକେ
କୌତୁକ ଦେଖେ ତୀରେ ସଖିଗଣ ।
ଚକ୍ରବାକ ମଣ୍ଡଳ     ପୃଥକ୍-ପୃଥକ୍ ଯୁଗଳ
ଜଲ ହୈତେ କରିଲ ଉଦ୍ଗମ ।
ଉଠିଲ ପଦ୍ମମଣ୍ଡଳ     ପୃଥକ୍-ପୃଥକ୍ ଯୁଗଳ
ଚକ୍ରବାକେ ହୈଲ ଆଚ୍ଛାଦନ ।
ଉଠିଲ ବନ୍ଧୁ ରକ୍ତୋତ୍ପଲ     ପୃଥକ୍-ପୃଥକ୍ ଯୁଗଳ
ପଦ୍ମଗଣେର କରେ ନିବାରଣ ।
ପଦ୍ମ ଚାହେ ଲୁଟି ନିତେ     ଉତ୍ପଳ ଚାହେ ରାଖିତେ
ଚକ୍ରବାକ ଲାଗି ଦୋହାଁର ରଣ ।
ପଦ୍ମୋତ୍ପଳ ଅଚେତନ     ଚକ୍ରବାକ ସଚେତନ
ଚକ୍ରବାକେ ପଦ୍ମ ଆସ୍ୱାଦୟ ।
ଇହାଁ ଦୁହାଁର ଉଲଟା ସ୍ଥିତି     ଧର୍ମ ହୈଲ ବିପରୀତ
କୃଷ୍ଣେର ରାଜ୍ୟେ ଐଛେ ନ୍ୟାୟ ହୟ ।
ମିତ୍ରେର ମିତ୍ର ସହବାସୀ,     ଚକ୍ରବାକେ ଲୁଟେ ଆସି
କୃଷ୍ଣେର ରାଜ୍ୟେ ଐଛେ ବ୍ୟବହାର ।
ଅପରିଚିତ ଶତ୍ରୁର ମିତ୍ର     ରାଖେ ଉତ୍ପଳ ଏ ବଡ ଚିତ୍ର
ଏ ବଡ଼ ବିରୋଧ ଅଲଙ୍କାର ।
ଅତିଶୟୋକ୍ତି ବିରୋଧାଭାସ     ଦୁଇ ଅଲଙ୍କାର ପରକାଶ
କରି କୃଷ୍ଣ ପ୍ରକଟ ଦେଖାଇଲ,

ଯାହା କରୁ ଆସ୍ୱାଦନ ଆନନ୍ଦିତ ମୋର ମନ,
ନେତ୍ର କର୍ଣ୍ଣ-ଯୁଗ ଜୁଡ଼ାଇଲ
ଐଛେ ଚନ୍ଦ୍ର ଲୀଳା କରି, ଘରେ ଆଇଲ ଗୌରହରି,
ସଙ୍ଗେ ଲଇଁ ସବୁ ସଖୀଗଣ ।
ଗନ୍ଧ-ତୈଲ ମର୍ଦ୍ଦନ, ଆମଲକ ଉଦ୍ବର୍ତ୍ତନ
ସେବା କରେ ଘରେ ସଖୀଗଣ ।
ପୁନରପି କୈଲ ସ୍ନାନ, ଶୁଷ୍କବସ୍ତ୍ର ପରିଧାନ,
ରତ୍ନମନ୍ଦିରେ କୈଲ ଆଗମନ ।
ବୃନ୍ଦା କୃତ ସମ୍ଭାର, ଗନ୍ଧ ପୁଷ୍ପ ଅଲଙ୍କାର,
ବନ୍ୟବେଶ କରିଲ ରଚନ ।
ବୃନ୍ଦାବନେର ତରୁଲତା ଅଦ୍ଭୁତ ତାହାର କଥା
ବାରମାସ ଧରେ ଫୁଲ ଫଳ ।
ବୃନ୍ଦାବନେ ଦେବୀଗଣ କୃଷ୍ଣ ଦାସୀ ଯତ ଜନ
ଫଲ ପାଡ଼ି ଆନିଯା ସକଲ ।
ଉତ୍ତମ ସଂସ୍କାର କରି ବଡ଼ ବଡ଼ ଥାଲି ଭରି
ରତ୍ନମନ୍ଦିର ପିଣ୍ଡାର ଉପରେ ।
ଭକ୍ଷଣେର କ୍ରମ କରି ଧରିଅଛେ ସାରି ସାରି
ଅଗେ ଆସନ ବସିବାର ତରେ ।
ଏକ ନାରିକେଲ ନାନାଜାତି, ଏକ ଆମ୍ର ନାନା ଭାଁତି
କଲା କୋଲି ବିବିଧ ପ୍ରକାର ।
ପନସ ଖର୍ଜୁର କମଲା, ନାରଙ୍ଗ ଜାମ ସମତାରା
ଦ୍ରାକ୍ଷା ବାଦାମ ମେଓୟା ଯତ ଆର ।
ଖରମୁଜା କ୍ଷୀରିଣୀ ତାଲ କେଶୁର ପାନିଫଲ ମୃଣାଲ
ବେଲ ପୀଲୁ ଦାଡ଼ିମ୍ବାଦି ଯତ ।

କୋନ ଦେଶେ କାବେଶଖ୍ୟାତ          ବୃନ୍ଦାବନେ ସବପ୍ରାପ୍ତି
ସହସ୍ର ଜାତ ଲେଖାଯାଏ କତ ?
ଗଙ୍ଗାଜଳ ଅମୃତ କେଲି,          ପୀୟୁଷ ଗ୍ରନ୍ଥି କର୍ପୂର କେଲି
ସରପୂପୀ ଅମୃତ-ପଦ୍ମ-ଚନ୍ଦ୍ର ।
ଖଣ୍ଡ-କ୍ଷୀରସାର ବୃକ୍ଷ          ଘରେ କରି ନାନା ଭକ୍ଷ
ରାଧା ଯାହା କୃଷ୍ଣ ଲାଗି ଆନ ।
ଭକ୍ଷେର ପରିପାଟୀ ଦେଖି,          କୃଷ୍ଣ ହୈଲ ମହାସୁଖୀ
ବସି କୈଲ ବନ୍ୟ ଭୋଜନ ।
ସଙ୍ଗେ ଲଞା ସଖୀଗଣ          ରାଧା କୈଲ ଭୋଜନ
ଦୋହେଁ କୈଲ ମନ୍ଦିରେ ଶୟନ ।
କେହୋ କରେ ବ୍ୟଜନ          କେହୋ ପାଦ ସଂବାହନ
କେହୋ କରାୟ ତାମ୍ବୂଲ ଭକ୍ଷଣ ।
ରାଧା କୃଷ୍ଣ ନିଦ୍ରା ଗେଲା          ସଖୀଗଣ ଶୟନ କୈଲା
ଦେଖି ଆମାର ସୁଖୀ ହୈଲ ମନ ।
ହେନ କାଲେ ମୋରେ ଧରି,          ମହା କୋଲାହଲ କରି
ତୁମି ସବ ଇହାଁ ଲଞା ଆଇଲା ।
କାହାଁ ଯମୁନା ବୃନ୍ଦାବନ          କାହାଁ କୃଷ୍ଣ ଗୋପୀଗଣ
ସେଇ ସୁଖ ଭଙ୍ଗ କରାଇଲା ।
[ ଚୈଃ ଅନ୍ତ୍ୟ ୧୮ ]

ମହାପ୍ରଭୁଙ୍କର ଦିନ ଦିନ ଏହିରୂପ କୃଷ୍ଣ ବିରହ ବ୍ୟାକୁଳ ଅବସ୍ଥା ବଢ଼ିବାକୁ ଲାଗିଲା । ସେ ଉଦ୍‌ଘୂର୍ଣ୍ଣା ଦଶାରେ ସତତ ବିବଶ, ଦିବ୍ୟୋନ୍ମାଦ ହେତୁ ଲଳିତମାଧବର ନିମ୍ନ ଶ୍ଳୋକ ଆବୃତ୍ତିପୂର୍ବକ ସ୍ୱରୂପ ଓ ରାମାନନ୍ଦଙ୍କ ଗଳା ଧରି କାନ୍ଦି କାନ୍ଦି କହୁଛନ୍ତି ସଖି !

କ୍ୱ ନନ୍ଦ କୁଳଚନ୍ଦ୍ରମାଃ, କ୍ୱ ଶିଖିଚନ୍ଦ୍ର କାଲଙ୍କୃତିଃ
କ୍ୱ ମନ୍ଦ୍ରୀ ମୁରଲୀରବଃ, କ୍ୱ ନୁ ସୁରେନ୍ଦ୍ରନୀଳଦ୍ୟୁତିଃ
କ୍ୱ ରାସ ରସତାଣ୍ଡବୀ, କ୍ୱ ସଖି ଜୀବରକ୍ଷୌଷଧି
ର୍ନିଧିର୍ମମ ସୁହୃତ୍ତମଃ, କ୍ୱ ବତ ହନ୍ତ ହାଧିକ୍ ବିଧିମ୍ ।

କେହି ଏହାର ଅର୍ଥ ସମ୍ୟକ୍ ଆସ୍ୱାଦନ କରିବାକୁ ଇଚ୍ଛା କଲେ ଶ୍ରୀଚୈତନ୍ୟ ଚରିତାମୃତ ଦେଖି ପାରନ୍ତି । ସେ ସକଳ ଭାବ ତରଙ୍ଗ ମହା-ସାଗରର ତରଙ୍ଗାବଳୀକୁ ଜଣାଅଛି । ଏକ ଭାବ ଶେଷ ସୀମାରେ ନ ପହଞ୍ଚୁଣୁ ଅପରଭାବ ଖେଳ ଆସୁଅଛି । ଭାବ ଭାବର ମହାଯୁଦ୍ଧ ଲାଗୁଅଛି । କେତେବେଳେ ବିଧିକୁ ନିନ୍ଦା କରୁଅଛନ୍ତି, କେତେବେଳେ ନିଜ ପ୍ରାଣନାଥ ଶ୍ରୀକୃଷ୍ଣଙ୍କ ପ୍ରତି ଦୋଷାରୋପ କରୁଅଛନ୍ତି, କେତେବେଳେ ନିଜ ଅଦୃଷ୍ଟକୁ ଦୋଷ ଦେଉଛନ୍ତି ଏବଂ ଶ୍ରୀକୃଷ୍ଣ ମଥୁରା ଯିବାପରେ ଗୋପୀମାନେ ଯେରୂପ ବିଳାପ କରିଥିଲେ, ଶ୍ରୀମଦ୍‌ଭାଗବତରୁ ସେହି ଶ୍ଳୋକମାନ ଆବୃତ୍ତି କରି ରାଧା ଭାବରେ ବିହ୍ୱଳ ହୋଇ ଅଛନ୍ତି । ଶ୍ରୀଲସ୍ୱରୂପ ଓ ଶ୍ରୀଲ ରାମାନନ୍ଦ ଶତ ଚେଷ୍ଟା କରି ମଧ୍ୟ ତାହାଙ୍କୁ ସୁସ୍ଥ କରାଇ ପାରୁ ନାହାନ୍ତି । ଅନେକ ଯତ୍ନରେ କଥଞ୍ଚିତ ସୁସ୍ଥ କରାଇ ସ୍ୱରୂପ ଓ ରାମାନନ୍ଦ ମହାପ୍ରଭୁଙ୍କୁ ଗମ୍ଭୀରା ମଧ୍ୟରେ ଶୁଆଇଲେ । ସ୍ୱରୂପ ବହିର୍ଭାଗରେ ଶୋଇଲେ ଓ ରାମାନନ୍ଦ ନିଜ ଭବନକୁ ଚାଲିଗଲେ । ମହାପ୍ରଭୁଙ୍କର ନିଦ୍ରା ନାହିଁ, ସେ ପ୍ରେମରେ ଗର ଗର ହୋଇ ପ୍ରଳାପ କରି ବାହାରକୁ ବାହାରି ଯିବାର ଚେଷ୍ଟା କଲେ କିନ୍ତୁ ବାହ୍ୟଜ୍ଞାନ ନ ଥିବାରୁ କାନ୍ଥରେ ଶ୍ରୀମୁଖ ଘର୍ଷିତ ହୋଇ ଗଣ୍ଡରୁ ନାସାରୁ ରକ୍ତ ଦର ଦର ଧାରରେ ବହିବାକୁ ଲାଗିଲା । ମହାପ୍ରଭୁ ଗଁ ଗଁ ଶବ୍ଦ କରୁଥିବାର ଶୁଣି ସ୍ୱରୂପ ଦ୍ୱାର ଖୋଲି ମହାପ୍ରଭୁଙ୍କର ଏଭଳି ଅବସ୍ଥା ଦେଖି ବଡ଼ ବ୍ୟଥିତ ହେଲେ ଓ ତହୁଁର ଦିବସଠାରୁ ଶଙ୍କରଙ୍କୁ ମହାପ୍ରଭୁଙ୍କ ପାଦ-ତଳେ ଶୁଆଇଲେ । ଅଳ୍ପରେ ଶଙ୍କରଙ୍କର ନିଦ୍ରା ଭଙ୍ଗ ହୁଏ ଓ ସେ ମହାପ୍ରଭୁଙ୍କ ଉନ୍ମାଦ ଦଶା ପ୍ରତି ସତତ ସତର୍କ ରହନ୍ତି

ଥରେ ମହାପ୍ରଭୁ ନିଜ ପରିକର ସଙ୍ଗରେ ଶ୍ରୀ ଜଗନ୍ନାଥ ବଲ୍ଲଭ ନାମା ପୁଷ୍ପୋଦ୍ୟାନରେ ଭ୍ରମଣ କରୁ କରୁ ଶ୍ରୀ ଗୀତଗୋବିନ୍ଦରୁ, "ଲଳିତ ଲବଙ୍ଗ-ଲତା" ଛନ୍ଦଟି ଶୁଣିବାର ଇଚ୍ଛା ପ୍ରକାଶ କରନ୍ତେ ସ୍ୱରୂପାଦି ତାହା ଅତି ସୁମଧୁର ସ୍ୱରରେ ଗାଇବାକୁ ଲାଗିଲେ । ମହାପ୍ରଭୁ ତାହା ଶୁଣି ଶ୍ରୀ ରାଧାଙ୍କ ଭାବରେ ନାଚିବାକୁ ଲାଗିଲେ ଏବଂ ନୃତ୍ୟ କରୁ କରୁ ଅଶୋକବୃକ୍ଷ ମୂଳରେ ହଠାତ୍ ନିଜ ପ୍ରାଣବଲ୍ଲଭ ଶ୍ରୀକୃଷ୍ଣଙ୍କର ଦର୍ଶନ ପାଇଲେ । ସେ ଶ୍ରୀକୃଷ୍ଣଙ୍କୁ ଦେଖି ତାହାଙ୍କ ଆଡ଼କୁ ଧାଆନ୍ତେ ରସିକଚୂଡ଼ାମଣି ଶ୍ରୀକୃଷ୍ଣ ଅନ୍ତର ହୋଇଗଲେ । ତେଣୁ ମହାପ୍ରଭୁ ଶ୍ରୀକୃଷ୍ଣ ବିରହରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ହୋଇଗଲେ, କିନ୍ତୁ ପୁଷ୍ପୋଦ୍ୟାନଟି ତାହାଙ୍କ ଶ୍ରୀଅଙ୍ଗ ଗନ୍ଧରେ ପୂର୍ଣ୍ଣ । ମହାପ୍ରଭୁ ଚେତନା ପାଇ ସେ ଗନ୍ଧ ଆସ୍ୱାଦନ ପୂର୍ବକ ବିହ୍ୱଳ ହେଲେ ଏବଂ ପ୍ରିୟସଖୀ ବିଶାଖା ସ୍ଥାନୀୟ ଶ୍ରୀରାମାନନ୍ଦଙ୍କ ହାତ ଧରି ନିମ୍ନ ଶ୍ଲୋକଟି ଆବୃତ୍ତି କରିବାକୁ ଲାଗିଲେ । ଯଥାଃ—

କୁରଙ୍ଗମଦଜିଦ୍ ବପୁଃ ପରିମଳୋର୍ମ୍ମିକୃଷ୍ଟାଙ୍ଗନଃ,
ସ୍ୱକାଙ୍ଗନଳିନାଷ୍ଟକେ ଶଶିଯୁତାବ୍ଜ ଗନ୍ଧପ୍ରଥଃ ।
ମଦେନ୍ଦୁବର ଚନ୍ଦନାଗୁରୁ ସୁଗନ୍ଧ ଚର୍ଚ୍ଚାର୍ଚ୍ଚିତଃ,
ସ ମେ ମଦନମୋହନଃ ସଖି ତନୋତି ନାସା ସ୍ପୃହାମ୍ ।

( ଚୈଃ ଅନ୍ତ୍ୟ ୧୯ )

ମହାପ୍ରଭୁ କେବଳ ଯେ ଏହି ଶ୍ଳୋକଟି ପଢ଼ି ନିରସ୍ତ ହେଲେ ଏମନ୍ତ ନୁହେଁ, ନିଜେ ତାହାର ଅର୍ଥ ବିସ୍ତାର କରି ଆସ୍ୱାଦନ କରିବାକୁ ଲାଗିଲେ । ବାହୁଲ୍ୟ ଭୟରେ ତାହା ଏଠାରେ ଉଲ୍ଲେଖ କଲି ନାହିଁ । ପାଠକେ ଶ୍ରୀଚୈତନ୍ୟ ଚରିତାମୃତରୁ ତାହା ସମ୍ୟକ୍ ଆସ୍ୱାଦନ କରି ପାରନ୍ତି । ଏହିପରି ବିହ୍ୱଳ ଭାବରେ ଗୀତ ଗାଇ ନାଚୁ ନାଚୁ ରାତ୍ରି ପ୍ରଭାତ ହେଲା ।

ମହାପ୍ରଭୁଙ୍କର ଏହସ୍ଥଳରେ ଯେ ପ୍ରେମାସ୍ୱାଦନ ତାହା ପ୍ରସ୍ଫୁଟିତ କରିବାକୁ ଭାଷା ନାହିଁ । ସ୍ୱୟଂ ଦେବୀ ସରସ୍ୱତୀ ଯଦି କୋଟିମୁଖ ସେ ବର୍ଣ୍ଣନ କରନ୍ତି ତେବେ ହି ଏ ମାଦନାଖ୍ୟ ମହାଭାବର ମହିମା ବର୍ଣ୍ଣନ କରିବାକୁ ସକ୍ଷମ ହେବେ ନାହିଁ । ତାହା କେବଳ ଶ୍ରୀ ବୃନ୍ଦାବନର ସମ୍ପତ୍ତି ଓ ବୈକୁଣ୍ଠର ମଧ୍ୟ ତାହା ଦୁର୍ଲଭ । ମହାପ୍ରଭୁ ଏହରୂପେ ଶ୍ରୀ ରାଧାଙ୍କ ଭାବରେ ଭାବିତ ହୋଇ ଶ୍ରୀରାଧା ଓ ଅପରାପର ଗୋପୀମାନଙ୍କର ପୂର୍ବରାଗ, ଅଭିସାର, ସମ୍ଭୋଗ, ଓ ବିପ୍ରଲମ୍ଭାଦିରେ ଯେ ସମସ୍ତ ଦଶା ହୋଇଥିଲା ତାହା ସମ୍ୟକ୍ ଆସ୍ୱାଦନପୂର୍ବକ ନିଜ ବାଞ୍ଛା ପୂର୍ଣ୍ଣ କରିଥିଲେ ଏବଂ ଉତ୍କଳ ସୌଭାଗ୍ୟରେ ଏହ ମହାଭାବନିଧିର ପ୍ରବଳବନ୍ୟା ସେହ ୧୮ ବର୍ଷ କାଳ ଉତ୍କଳର ଭୂତଳ ଓ ଆକାଶ ମଣ୍ଡଳକୁ ପୂର୍ଣ୍ଣକରି ପ୍ରବାହିତ ହୋଇଥିଲା । ଉତ୍କଳର ଶ୍ରୀମାନ୍ ଶିଖିମହାନ୍ତି, ଶ୍ରୀଲ ରାମାନନ୍ଦ ରାୟ, ଶ୍ରୀଲ କାଶୀମିଶ୍ର, ଶ୍ରୀ ପ୍ରଦ୍ୟୁମ୍ନ ମିଶ୍ର, ମହାରାଜା ଶ୍ରୀ ପ୍ରତାପରୁଦ୍ର ଦେବ ପ୍ରଭୃତି ମହାଭାଗ୍ୟବାନ ବ୍ୟକ୍ତିମାନେହ ପ୍ରେମ ବନ୍ୟାରେ ସନ୍ତରଣ କରୁଥିଲେ । ଯେଉଁମାନେ ସେ ପ୍ରକଟ ଲୀଳା କେବଳ ମାତ୍ର ଦର୍ଶନ କରିଥିଲେ ସେମାନେହିଁ ମହାସୌଭାଗ୍ୟବାନ୍ । ସେ ଅପୂର୍ବ ଆସ୍ୱାଦ ନାଗର ଲୀଳା ମାଧୁର୍ଯ୍ୟଠାରେ ଅମୃତ ମଧ୍ୟ ଅତି ତୁଚ୍ଛ । ଦେବତାମାନେ ସେ ପ୍ରେମମୟ ଲୀଳାମୃତର କଣାମାତ୍ର ଆସ୍ୱାଦନ ପାଇଁ ଉତ୍କଣ୍ଠିତ । ଶ୍ରୀଲ କୃଷ୍ଣଦାସ କବିରାଜହିଁ ତହିଁରୁ କିଛି ସଂଗ୍ରହ ପୂର୍ବକ ଲେଖି ଯାଇଥିବାରୁ ଅପର କେହ ଭାଗ୍ୟବାନ ଆଜ ମଧ୍ୟ ସେ ଅପୂର୍ବ ପ୍ରେମରସର ଆସ୍ୱାଦନ ପାଉ ଅଛନ୍ତି । ମୁଁ ମୂଢ଼ତା ପୂର୍ବକ ତାହା ବର୍ଣ୍ଣ କରିବାକୁ ଯାଉଅଛି, କିନ୍ତୁ ପ୍ରାକୃତ କାମର କିଙ୍କର ଏ ପାମର କି ସେ ଅପ୍ରାକୃତ ପ୍ରେମର ଆସ୍ୱାଦନ ପାଇ ପାରେ ? ବଙ୍ଗର ସୁବିଖ୍ୟାତ ଭକ୍ତ ଶିରୋମଣି ଶ୍ରୀ ଯୁକ୍ତ ରସିକମୋହନ ବିଦ୍ୟାଭୂଷଣ ତାହାଙ୍କ ରଚିତ "ଗମ୍ଭୀରା ଲୀଳା" ଓ "ନୀଳାଚଳେ ବ୍ରଜମାଧୁରୀ" ନାମା ଗ୍ରନ୍ଥମାନଙ୍କରେ ଏ ମାଧୁରୀ କିଛି କିଛି ଆସ୍ୱାଦନ କରି ପାଠକମାନଙ୍କୁ ଉପହାର ଦେଇ ଅଛନ୍ତି ।

ମହାପ୍ରଭୁ ଏହିପରି ଦିବାନିଶି ବିହ୍ୱଳ ଅବସ୍ଥାରେ ରହିଥାଆନ୍ତି । ଦିନ ଦିନ ବିରହବ୍ୟାଧି ବଢ଼ିବାକୁ ଲାଗିଲା । ସେ ଅବସ୍ଥା ଦେଖି ତାହାଙ୍କର ନିଜ ପ୍ରିୟ ପାର୍ଷଦମାନଙ୍କର ଚିନ୍ତାର ମାତ୍ରା ମଧ୍ୟ ସେହିରୂପ ବଢ଼ିବାକୁ ଲାଗିଲା । ଠାକୁର ଶ୍ରୀହରିଦାସ ମହାପ୍ରଭୁଙ୍କର ଜଣେ ପ୍ରଧାନ ଅନ୍ତରଙ୍ଗ । ସେ ମହାପ୍ରଭୁଙ୍କର ମନ ଗତ ବୁଝି ପାରି ଦିନେ ଏକାନ୍ତରେ ତାହାଙ୍କୁ କହିଲେ, "ପ୍ରଭୋ ! ମୁଁ ଅସ୍ପୃଶ୍ୟ, କିନ୍ତୁ ମୋତେ ଆପଣ ମହା ଗୌରବରୁ ଗୋହାବ କରି ବୈକୁଣ୍ଠରେ ଚଢ଼ାଇଲେ, ମୋତେ ଅନେକ ତରାଇଲେ । ଏବେ ମୋର ଗୋଟିଏ ବାଞ୍ଛା ପୂର୍ଣ୍ଣ କରିବାକୁ ହେବ । ମୁଁ ବୁଝି ପାରୁଛି, ଆପଣ ଶୀଘ୍ର ଏ ମର୍ତ୍ତ୍ୟଲୀଳା ସମ୍ବରଣ କରିବେ, କିନ୍ତୁ ମୋତେ ସେ ହୃଦୟବିଦାରକ ଦଶା ଯେପରି ଭୋଗ କରିବାକୁ ନ ହୁଏ । ଯଥା:—

ଏକ ବାଞ୍ଛା ହୟ ମୋର ବହୁଦିନ ହୈତେ,
ଲୀଳା ସମ୍ବରିବେ ତୁମି ମୋର ଲୟଚିତ୍ତେ ।
ସେଇ ଲୀଳା ପ୍ରଭୁ ମୋରେ କଭୁ ନା ଦେଖାଇବା,
ଆପନାର ଆଗେ ମୋର ଶରୀର ପାଡ଼ିବା ।
ହୃଦୟେ ଧରିବୁ ତୋମାର କମଳ ଚରଣ,
ନୟନେ ଦେଖିଁ ମୁଁ ତୋମାର ଚନ୍ଦ୍ରବଦନ ।
ଜିହ୍ୱାୟ ଉଚ୍ଚାରିମ୍ ତୋମାର କୃଷ୍ଣ ଚୈତନ୍ୟ ନାମ,
ଏଇମତ ମୋର ଇଚ୍ଛା ଛାଡ଼ିମ୍ ପରାଣ ।

ମହାପ୍ରଭୁ କହିଲେ "ହରିଦାସ ! ତୁମ୍ଭେ ହରିଦାସମାନଙ୍କ ମଧ୍ୟରେ ଶ୍ରେଷ୍ଠ । କୃପାମୟ ଭକ୍ତବତ୍ସଳ ଶ୍ରୀକୃଷ୍ଣ ଅବଶ୍ୟ ତୁମ୍ଭର ଇଚ୍ଛା ପୂର୍ଣ୍ଣ କରିବେ । କିନ୍ତୁ ମୋତେ ଛାଡ଼ି ତୁମ୍ଭର ଆଗେ ଯିବା ଉଚିତ କି ? ତୁମ୍ଭ-ମାନଙ୍କୁ ନେଇକରି ମୋର ସମସ୍ତ ଆମୋଦ ପ୍ରମୋଦ ।" ହରିଦାସ କହିଲେ "ପ୍ରଭୋ ! ମୋର ମୁକୁଟମଣି ସ୍ୱରୂପ ଆପଣଙ୍କର ବହୁ ବହୁ ଅନ୍ତରଙ୍ଗ ଭକ୍ତ ଅଛନ୍ତି, ମୁଁ ଗୋଟାଏ କୀଟ ମାତ୍ର । ଗୋଟିଏ ପିପୀଲିକା ମଲେ କି

ପୃଥିବୀର ଭକ୍ତ ହୀନ ହୁଏ ।” ମହାପ୍ରଭୁ ଶ୍ରୀ ହରିଦାସଙ୍କ ଭାବ ବୁଝି ସାରବ ହେଲେ ଓ ତତ୍ପର ଦିବସ ଶୀଘ୍ର ଆସି ହରିଦାସଙ୍କୁ ଦର୍ଶନ ଦେଲେ । ସେଦିନ ମହାପ୍ରଭୁଙ୍କ ଆକର୍ଷଣାନୁସାରେ ଅନ୍ତରଙ୍ଗ ଭକ୍ତସକଳ ସେଠାରେ ଉପଗତ ହେଲେ । ମହାପ୍ରଭୁ ଏକ ମହାସଂକୀର୍ତ୍ତନ ଆରମ୍ଭ କରାଇଲେ ଓ ନିଜେ ହରିଦାସଙ୍କର ଗୁଣମାନ ଅଶେଷରୂପେ କୀର୍ତ୍ତନ କରିବାକୁ ଲାଗିଲେ । ମୁଁ ମୋର “ଶ୍ରୀ ହରିଦାସ ଠାକୁର” ନାମକ ଗ୍ରନ୍ଥରେ ସେ ସମସ୍ତ ଗୁଣ ଭକ୍ତି ଭକ୍ତ ଆଲୋଚନା କରିଅଛି । ମହାପ୍ରଭୁ ଏହିରୂପେ ଠାକୁର ଶ୍ରୀ ହରିଦାସଙ୍କର ସମସ୍ତ ପ୍ରାର୍ଥନା ପୂର୍ଣ୍ଣ କଲେ । ତତ୍ପରେ ମହାପ୍ରଭୁ ଶ୍ରୀହରି ଦାସଙ୍କ ପ୍ରାଣପ୍ରୟାଣ ପରେ ତାହାଙ୍କ ତନୁକୁ କୋଳରେ ଧରି ନାଚିବାକୁ ଲାଗିଲେ ଓ ପରେ ବିମାନରେ ଚଢ଼ାଇ ଭକ୍ତଗଣ ସଙ୍ଗେ କୀର୍ତ୍ତନ କରି କରି ସମୁଦ୍ର ତୀରକୁ ନେଇଗଲେ ଏବଂ ସମୁଦ୍ରରେ ସ୍ନାନ କରାଇ “ଆଜଠାରୁ ଏ ସମୁଦ୍ର ମହାତୀର୍ଥରେ ପରିଣତ ହେଲେ ।” ଏହି ବର ପ୍ରଦାନ କରି ପ୍ରସାଦ-ଚନ୍ଦନାଦିରେ ହରିଦାସଙ୍କ ତନୁକୁ ଭୂଷିତକରି ବାଲୁକା ମଧ୍ୟରେ ସମାଧିସ୍ଥ କରାଇଲେ ଏବଂ ନିଜେ ପୁଣି ବଡ଼ଦେଉଳର ସିଂହଦ୍ୱାରକୁ ଯାଇ ହରିଦାସଙ୍କ ମହୋତ୍ସବପାଇଁ ମହାପ୍ରସାଦ ଭିକ୍ଷାକଲେ ଏବଂ ବୈଷ୍ଣବ ଓ ଅପରାପର ଭକ୍ତମାନଙ୍କୁ ମହାପ୍ରସାଦ ଆକଣ୍ଠ ସେବନ କରାଇ ନିମ୍ନୋକ୍ତରୂପେ ବରପ୍ରଦାନ କଲେ । ଯଥା—

ହରିଦାସେର ବିଜୟୋତ୍ସବ ଯେ କୈଲ ଦର୍ଶନ ।
ଯେଇ ତାହା ନୃତ୍ୟକୈଲ ଯେ କୈଲ କୀର୍ତ୍ତନ ।
ଯେ ତାରେ ବାଲୁକାଦିତେ କରିଲ ଗମନ ।
ତାଁର ମହୋତ୍ସବେ ଯେଇ କରିଲ ଭୋଜନ ॥
ଅଚିରେ ହଇବେ ତା ସଭାର କୃଷ୍ଣପ୍ରାପ୍ତି ।
ହରିଦାସ ଦରଶନେ ଐଛେ ହୟ ଶକ୍ତି ॥”

ମହାପ୍ରଭୁ ନିଜେତ ପ୍ରକଟକାଳରେ ନାମପ୍ରେମ ପ୍ରଚାର କଲେ । ଭବିଷ୍ୟତରେ ଏହା ବିସ୍ତୃତଲାଭ କରୁ ମହାପ୍ରଭୁଙ୍କର ଏ ଇଚ୍ଛା ମଧ୍ୟ

ଥିଲା । ତେଣୁ ସେ ନିଜବାସ କୁଟୀରରେ ଶ୍ରୀଲ ଗୋପାଳଗୁରୁ ଗୋସ୍ୱାମୀଙ୍କୁ ମହନ୍ତରୂପ ଗାଡ଼ୀ ପ୍ରଦାନକରି ଅଭିଷେକ୍ତ କଲେ । ଅଦ୍ୟାବଧି ଶ୍ରୀଲ ଗୋପାଳଗୁରୁଙ୍କ ଶିଷ୍ୟପ୍ରଶିଷ୍ୟମାନେ ସେ ଗାଦିରେ ମହନ୍ତ ହୋଇ ଆସୁଅଛନ୍ତି । ଉକ୍ତମଠଟି ମହାପ୍ରଭୁଙ୍କର ପ୍ରଧାନ ଲୀଳାସ୍ଥଳ ଥିବାରୁ ସେଠା ମହନ୍ତମାନେ ଶ୍ରୀ ନବଦ୍ୱୀପ ଓ ଶ୍ରୀ ବୃନ୍ଦାବନ ପ୍ରଭୃତ ସମସ୍ତ ତୀର୍ଥସ୍ଥ ବୈଷ୍ଣବମାନଙ୍କର ପୂଜନୀୟ ହୋଇଅଛନ୍ତି ।

ମହାପ୍ରଭୁ ଏହିରୂପେ ଅପାରଲୀଳା ସମ୍ପାଦନ କରି ଅପ୍ରକଟ ହୋଇଗଲେ କିନ୍ତୁ ଭବିଷ୍ୟତ ମନୁଷ୍ୟଙ୍କପାଇଁ ସେ କ'ଣ କରି ରଖିଗଲେ ଦେଖାଯାଉ । ତାହାଙ୍କ ଆଦେଶାନୁସାରେ ଗୋସ୍ୱାମୀଗଣ ଧର୍ମସ୍ଥାପନପାଇଁ ଶାସ୍ତ୍ରସିନ୍ଧୁ ମନ୍ଥନପୂର୍ବକ ସିଦ୍ଧାନ୍ତ ରତ୍ନମାନ ଆହରଣ କରି ନାନା ଅପୂର୍ବ ଉପାଦେୟ ଗ୍ରନ୍ଥମାନ ରଚନା କରିଯାଇଅଛନ୍ତି । ଗୁରୁ ପରଂପରାରେ ତାହାଙ୍କ ପ୍ରବର୍ତ୍ତିତ ବୈଷ୍ଣବଧର୍ମ ସମଗ୍ର ଭାରତରେ ବ୍ୟାପ୍ତ ହୋଇ ଅଛି ଓ ବର୍ତ୍ତମାନ ଇଉରୋପ ଓ ଆମେରିକା ପ୍ରଭୃତ ସ୍ଥାନମାନଙ୍କ ମଧ୍ୟ କ୍ରମେ ପ୍ରଚାର ଲଭିବାକୁ ଲାଗିଅଛି । ଏହାବ୍ୟତୀତ ମହାପ୍ରଭୁ କତିପୟ ଚିହ୍ନ ଭବିଷ୍ୟତ ଜୀବମାନଙ୍କର ମଙ୍ଗଳାର୍ଥ ରଖିଯାଇଅଛନ୍ତି । ସେଥିମଧ୍ୟରେ ତାହାଙ୍କ ବ୍ୟବହୃତ କନ୍ଥା ଓ କମଣ୍ଡଳୁ ଅଦ୍ୟାପି ଶ୍ରୀରାଧାକାନ୍ତ ମଠର ଗମ୍ଭୀରାମନ୍ଦିରରେ ସୁରକ୍ଷିତ ହୋଇ ପୂଜିତ ହେଉଅଛନ୍ତି । ଶ୍ରୀଜଗନ୍ନାଥଙ୍କ ଦେଉଳ ମଧ୍ୟରେ ଶ୍ରୀଗରୁଡ଼ସ୍ତମ୍ଭର ନିକଟରେ ମହାପ୍ରଭୁ ଯେଉଁଠାରେ ଦଣ୍ଡାୟମାନ ହୋଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରୁଥିଲେ ସେଠାରେ ଏକ ପ୍ରସ୍ତର ଉପରେ ମହାପ୍ରଭୁଙ୍କର ଶ୍ରୀପଦଦ୍ୱୟର ଚିହ୍ନ ରହିଯାଇଥିଲା । ସେ ଯେ ପ୍ରତ୍ୟହ ଠିକ୍ ଏକସ୍ଥାନରେ ଠିଆ ହେଉଥିଲେ ଓ କ୍ରମେ ଠିଆ ହେବାଦ୍ୱାରା ସେ ଚିହ୍ନ ରହିଥିଲା ଏହା ତାହାଙ୍କ ପକ୍ଷରେ ଅସମ୍ଭବ ନ ହେଲେହେଁ ମୋର ସାମାନ୍ୟ ବୁଦ୍ଧିର ଅନୁମାନ ଯେ ସେପରି ପ୍ରତ୍ୟହ ଛିଡ଼ା ହେବାର ନିଷ୍ଠ ନୁହେଁ, ମହାପ୍ରଭୁଙ୍କର ଭବିଷ୍ୟତ ଜୀବପ୍ରତି କରୁଣା ହେତୁ କୌଣସି ଏକଦିନ କୌଣସି ବିଶେଷ କାରଣରୁ ସେଠାରେ ଥିବା ପ୍ରସ୍ତରଖଣ୍ଡ

ଦ୍ରବୀଭୂତ ହୋଇ ସେ ସୌଭାଗ୍ୟ ଶୋଭାଯୁକ୍ତ ଶ୍ରୀଚରଣ ଚିହ୍ନମାନ ନିଜ ବକ୍ଷରେ ଧାରଣ କରିଥିଲେ । ଶ୍ରୀବୃନ୍ଦାବନରେ ଚରଣପାହାଡ଼ରେ ଯେପରି ଏକଦିନ ଶ୍ରୀକୃଷ୍ଣବଂଶୀ ଗାନ କରନ୍ତେ ସେ ପାହାଡ଼ର ପ୍ରସ୍ତରମାନ ଦ୍ରବୀଭୂତ ହେବାରୁ ଶ୍ରୀକୃଷ୍ଣଙ୍କର, ତାହାଙ୍କର ପ୍ରିୟସଖାମାନଙ୍କ ଓ ତାହାଙ୍କର ପ୍ରିୟଗାଭୀମାନଙ୍କର ପଦଚିହ୍ନ ସେଠାରେ ରହିଗଲା ଓ ଅଦ୍ୟାପି ତାହା ଜାଜ୍ଜ୍ୱଲ୍ୟମାନ ରହିଅଛି । ଏ ଶ୍ରୀପଦଚିହ୍ନ ମଧ୍ୟ ସେହିରୂପ ଅଟେ । ଶ୍ରୀଭଗବାନଙ୍କର ଶ୍ରୀଚରଣକମଳଙ୍କଁ ଭକ୍ତମାନଙ୍କର ଶ୍ରେଷ୍ଠ ଆଶ୍ରୟ । ସେଥିପାଇଁ ମହାପ୍ରଭୁ ଅପାର କୃପାପୂର୍ବକ ସେ ପଦଚିହ୍ନ ରଖିଯାଇ ଅଛନ୍ତି ସେ ଶ୍ରୀପଦ ଚିହ୍ନ ପ୍ରସ୍ତରଖଣ୍ଡ ବର୍ତ୍ତମାନ ଦେଉଳ ତୋଟା ଉତ୍ତର-ପାର୍ଶ୍ୱରେ ଏକସ୍ଥାନରେ ସୁରକ୍ଷିତ ହୋଇ ପୂଜିତ ହେଉ ଅଛନ୍ତି । ଶ୍ରୀ ଜଗନ୍ନାଥଦେବଙ୍କ ସ୍ନାନଯାତ୍ରାପରେ ଅନବସର ସମୟରେ ମହାପ୍ରଭୁ ଅଲାରନାଥ ଠାରେ ବାସ କରୁଥିଲେ । ସେ ଠାରେ ସେ ଶ୍ରୀଜଗନ୍ନାଥଙ୍କୁ ଉଦ୍ଦେଶ୍ୟକରି ଯେଉଁଠାରେ ସାଷ୍ଟାଙ୍ଗ ପ୍ରଣାମ କରୁଥିଲେ ସେହି ବୃହତ୍ ପ୍ରସ୍ତରଖଣ୍ଡ ଉପରେ ତାହାଙ୍କର ଶ୍ରୀଅଙ୍ଗର ଚିହ୍ନ ରହିଥିଲା । ତାହା ଏ ଚ୍ୟାରିଶତ ବର୍ଷର ଖର ବର୍ଷାରେ କ୍ରମେ ବିଲୁପ୍ତ ହେବାକୁ ବସିଥିଲା । ବର୍ତ୍ତମାନ ଶ୍ରୀ ରାଧାକାନ୍ତ ମଠର ଅଧିକାଂଶ ହୃଦୟବାନ୍ ଭକ୍ତ ଶ୍ରୀ ଭଗବାନ ଦାସଙ୍କ ଯତ୍ନରେ ଏକ ମନ୍ଦିର ସେଠାରେ ନିର୍ମିତ ହୋଇ ସେ ଶ୍ରୀଅଙ୍ଗ ଚିହ୍ନର ପ୍ରସ୍ତରଖଣ୍ଡ ସେଥି ମଧ୍ୟରେ ସୁରକ୍ଷିତ କରାହୋଇଅଛି । କଥିତ ଅଛି, ଠାକୁର ଶ୍ରୀ ହରିଦାସଙ୍କୁ ଛାୟା ପ୍ରଦାନ ପାଇଁ ମହାପ୍ରଭୁ ନିଜ ଦନ୍ତ ଧାବନର ବଉଳକାଠି ପୋତି ଦେଇଥିଲେ; ସେ ଏକ ସୁବୃହତ ବୃକ୍ଷ ହୋଇ ହରିଦାସଙ୍କୁ ଛାୟା ପ୍ରଦାନ କରୁଥିଲେ । ବର୍ତ୍ତମାନ ସେ ତରୁବର ଶ୍ରୀ ବକୁଳ ମଠରେ ଏକ ଅପୂର୍ବ ଦୃଶ୍ୟରୂପେ ଭକ୍ତ ଚୂଡ଼ାମଣିଙ୍କର କୀର୍ତ୍ତି ଅତି ଉଚ୍ଚରେ ଘୋଷଣା କରୁଅଛନ୍ତି । ସେ ତରୁବରଙ୍କୁ ଯେ ଦେଖିବ ସେ ତାହାଙ୍କର ମହିମା କିଞ୍ଚିତ ଉପଲବ୍ଧି କରିବ । ଶ୍ରୀ ପରମାନନ୍ଦପୁରୀ ଗୋସ୍ୱାମିଙ୍କର ଗୋଟିଏ କୂପ ଥିଲା । ମହାପ୍ରଭୁ ପୁରୀ ଗୋସ୍ୱାମିଙ୍କୁ

ପଚାରିଲେ, ଶ୍ରୀପାଦ, ଆପଣଙ୍କ କୂପର ଜଳ କପରି ହୋଇଅଛି ? ଶ୍ରୀପୁରୀ ଗୋସ୍ୱାମୀ ଉତ୍ତର କଲେ ସେ ଅଭାଗିଆ କୂପର ଜଳ ଭଲ ହେଉ ନାହିଁ । ମହାପ୍ରଭୁ ତତ୍‌କ୍ଷଣାତ୍ ସମସ୍ତ ତୀର୍ଥମାନଙ୍କୁ ଆହ୍ୱାନ କଲେ ଓ ତୀର୍ଥମାନେ ସେଠାରେ ଉପସ୍ଥିତ ହୁଅନ୍ତେ ସେ କୂପର ଜଳ ନିର୍ମଳ ଓ ସୁସ୍ୱାଦୁ ହେଲା । ସେ କୂପଟି ଶ୍ରୀ ଜଗନ୍ନାଥ ଦେଉଳର ଦକ୍ଷିଣପଶ୍ଚିମ କୋଣସ୍ଥ ଶ୍ରୀ ଲୋକନାଥଙ୍କ ଦର୍ଶନକୁ ଯିବା ପଥରେ ଅବସ୍ଥିତ ଓ ବର୍ତ୍ତମାନ ସେଠାରେ ଏକ ପୋଲିସ ଆଉଟ ପୋଷ୍ଟ ହୋଇଅଛି । ଆଜିକାଲି ମହାପ୍ରଭୁଙ୍କ ଜନ୍ମୋତ୍ସବସମୟରେ ଶ୍ରୀ ରାଧାକାନ୍ତ ମଠରେ ଯେ ୨୪ ପ୍ରହର କୀର୍ତ୍ତନ ହୁଏ ସେ କୀର୍ତ୍ତନ ମହୋତ୍ସବର ଅଧିବାସ ଦିନ ସଂକୀର୍ତ୍ତନସହ ସେ କୂପରୁ ଜଳ ଆନୀତ ହୁଏ ।

ଶ୍ରୀମନ୍ ମହାପ୍ରଭୁଙ୍କ ଅପ୍ରକଟ ପରେ ତାହାଙ୍କର ପାର୍ଷଦବୃନ୍ଦ ତାହାଙ୍କ ବିରହରେ ଅତୀବ ବ୍ୟାକୁଳ ହୋଇ ପଡ଼ିଲେ । ମହାପ୍ରଭୁଙ୍କ ମହାମହିମ୍ବୀ ଲୀଳା ପରସ୍ପର ଆଲୋଚନା କରି ଓ ତାହାଙ୍କ ରହସ୍ୟମାନ ନାଟକରେ ଅଭିନୟ କରାଇ ସେମାନେ ନିଜ ନିଜ ହୃଦୟକୁ କଥଞ୍ଚିତ ସୁସ୍ଥ କରାଇଲେ । ମହାପ୍ରଭୁଙ୍କର ଅପ୍ରକଟର ଅବ୍ୟବହିତ ପରେ ପ୍ରଭୁ ଶ୍ରୀନିବାସ ଆଚାର୍ଯ୍ୟ, ଠାକୁର ଶ୍ରୀ ନରୋତ୍ତମ, ପ୍ରଭୁ ଶ୍ରୀ ଶ୍ୟାମାନନ୍ଦ ଓ ପ୍ରଭୁ ଶ୍ରୀ ରସିକାନନ୍ଦ ମହାପ୍ରଭୁଙ୍କ ପ୍ରଚାରିତ ବୈଷ୍ଣବଧର୍ମକୁ ଜାଜ୍ୱଲ୍ୟମାନ କରି ରଖିଲେ । ଆମ୍ଭର ଏ ଉତ୍କଳ ପ୍ରଭୁ ଶ୍ରୀଶ୍ୟାମାନନ୍ଦ ଓ ପ୍ରଭୁ ଶ୍ରୀ ରସିକାନନ୍ଦଙ୍କ ଭାଗରେ ପଡ଼ିଥିଲା । ଭକ୍ତିରତ୍ନାକର ଓ ରସିକମଙ୍ଗଳ ପ୍ରଭୃତି ଗ୍ରନ୍ଥରେ ସେ ସବୁ ପ୍ରଚାର ବିଷୟ ବିସ୍ତୃତରୂପେ ବର୍ଣ୍ଣିତ ହୋଇଅଛି । ଏ ଅଧମ ମଧ୍ୟ ପ୍ରଭୁ "ଶ୍ରୀ ଶ୍ୟାମାନନ୍ଦ" ଓ ପ୍ରଭୁ "ଶ୍ରୀ ରସିକାନନ୍ଦ" ନାମା ଗ୍ରନ୍ଥରେ ସେ ସମ୍ବନ୍ଧରେ କିଛି କିଛି ଆଲୋଚନା କରିଅଛି । ସେ ଦୁଇ ମହାତ୍ମାଙ୍କ ଦ୍ୱାରା ଉତ୍କଳ ଯେ କେତେଦୂର ଉନ୍ନତ ଲଭିଥିଲା ଓ ବୈଷ୍ଣବଧର୍ମର ଯେ କିରୂପ ପ୍ରଚାର ହୋଇଥିଲା ତାହା ଉତ୍କଳର ବର୍ତ୍ତମାନ ବୈଷ୍ଣବ ସଂଖ୍ୟା ଦେଖିଲେହିଁ ଜଣା ପଡ଼ୁଅଛି । ଉତ୍କଳରେ

ଶତକଡ଼ା ୯୦ କିମ୍ବା ୯୫ ଜଣ ଅନ୍ତ ବୈଷ୍ଣବ ଧର୍ମାବଲମ୍ବୀ । ଏମନ୍ତ କି ବ୍ରାହ୍ମଣଙ୍କଠାରୁ ଇତର ଜାତି ପର୍ଯ୍ୟନ୍ତ ବୈଷ୍ଣବ ଶ୍ରେଣୀଭୁକ୍ତ । ଉତ୍କଳର ବଡ଼ ବଡ଼ ରାଜା ଓ ମହାରାଜା ଜମିଦାରମାନେ ଅଧିକାଂଶହିଁ ବୈଷ୍ଣବ ସମ୍ପ୍ରଦାୟଭୁକ୍ତ । କିନ୍ତୁ ଦୁଃଖର ବିଷୟ ଏହି ଯେ ଏତେଦୂର ବିସ୍ତୃତ ହୋଇ ମଧ୍ୟ, ଉକ୍ତ ବୈଷ୍ଣବଧର୍ମର ପ୍ରକୃତମର୍ମ ଅତି ଅଳ୍ପଲୋକହିଁ ଜାଣନ୍ତି । ଅବଶ୍ୟ ସେ ପ୍ରେମବୀଜ ଏକେବାରେ ଲୁପ୍ତ ହୋଇନାହିଁ । ସମସ୍ତ ସମୟରେ ବୈଷ୍ଣବ-ଧର୍ମର ସୂକ୍ଷ୍ମ ତତ୍ତ୍ୱଜ୍ଞ ମହାପଣ୍ଡିତମାନଙ୍କର ଅଭାବ ଏ ଉତ୍କଳ ଭୂ-ଭାଗରେ ଘଟିନାହିଁ । ଶ୍ରୀଲ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଶ୍ରୀଲ କବି-ସୂର୍ଯ୍ୟ ବନ୍ଧୁଗୁରୁ, ଶ୍ରୀଲ ଅଭିମନ୍ୟୁ ସାମନ୍ତସିଂହାର, ଶ୍ରୀ ଘନକୃଷ୍ଣ ଦାସ, ଶ୍ରୀ ପିଣ୍ଡିକ ଶ୍ରୀଚନ୍ଦନ, ଶ୍ରୀ ଦାଶରଥି ଦାସ, ଶ୍ରୀଗୋପାଳକୃଷ୍ଣ ପ୍ରଭୃତି ଉତ୍କଳର ଉଜ୍ଜ୍ୱଳ ନକ୍ଷତ୍ର । ସେମାନଙ୍କ ରଚିତ ଭକ୍ତିଗ୍ରନ୍ଥ ଓ ରସଗୀତା-ବଳୀ ତାହାର ପରିଚୟ । ଶ୍ରୀ ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ-ଚିନ୍ତାମଣି ଯେ କି ଉପାଦେୟ ଗ୍ରନ୍ଥ ଓ କେତେ ରସଶାସ୍ତ୍ର ମନ୍ଥନପୂର୍ବକ ନବନୀ ଉଦ୍ଧୃତ ହୋଇ ସେ ଗଢ଼ା ହୋଇଅଛି, ତାହା ଆସ୍ୱାଦନକାରୀ ଭକ୍ତମାନେହିଁ ଜାଣନ୍ତି । ଏପରି ଉତ୍କଳରୁ ଏକ ଉଜ୍ଜ୍ୱଳନକ୍ଷତ୍ର ଉଦୟ ହୋଇ ଉତ୍ତର ଓ ପଶ୍ଚିମ ଗଗନକୁ ଅଲଙ୍କୃତ କରି ରହିଅଛନ୍ତି । କିନ୍ତୁ ଆମ୍ଭ ଉତ୍କଳରେ ତାହାଙ୍କୁ ଅତି ଅଳ୍ପଲୋକେ ଜାଣିଥିବାର ବୋଧହୁଏ । ସେ ମହାପୁରୁଷ ଶ୍ରୀମଦ୍ଭାଗବତର ଟୀକା, ଶ୍ରୀ ଭଗବଦ୍ଗୀତାର ଟୀକା, ଶ୍ରୀଗୋବିନ୍ଦ ଭାଷ୍ୟ ପ୍ରଭୃତି ବହୁ ସଂସ୍କୃତ ଗ୍ରନ୍ଥ ପ୍ରଣୟନ କରି ଅଛନ୍ତି । ଶ୍ରୀ ବୃନ୍ଦାବନର ପଣ୍ଡିତମାନେ ତାହାଙ୍କ ପାଣ୍ଡିତ୍ୟ ପ୍ରତିଭାରେ ବିମୁଗ୍ଧ । ତାହାଙ୍କଦ୍ୱାରା ଶ୍ରୀ ଗୋବିନ୍ଦ, ଶ୍ରୀ ଗୋପୀନାଥ, ଶ୍ରୀ ମଦନମୋହନଜୀଉ ପ୍ରଭୃତି ବିଗ୍ରହମାନଙ୍କ ସେବା ଅଦ୍ୟାପି ଗୌଡ଼ୀୟ ବୈଷ୍ଣବମାନଙ୍କ ହସ୍ତରେ ରହିଅଛି । ତାହାଙ୍କର ନାମ ଶ୍ରୀବଳଦେବ ବିଦ୍ୟାଭୂଷଣ ଓ ସେ ପ୍ରକୃତ ବିଦ୍ୟାଭୂଷଣଥିଲେ । ଶ୍ରୀ ଶ୍ରୀ ଶ୍ୟାମସୁନ୍ଦରଙ୍କ କୃପାବଳେ ମୁଁ ତାହାଙ୍କ ବିଷ-ୟରେ କିଛି ଲେଖିବି, ଏହି ବାସନା କରିଅଛି ।

ଏହି କଥାପ୍ରସଙ୍ଗ ମହାତ୍ମାଙ୍କୁ ଶ୍ରଦ୍ଧା ଦେଇ ଦେଖିବାକୁ ଗଲେ ଉତ୍କଳର ବର୍ତ୍ତମାନ ଅବସ୍ଥା ବଡ଼ ଶୋଚନୀୟ ବୋଧ ହୁଏ । ଅନେକ ସ୍ଥାନରେ ଏହା ଦେଖାଯାଏ, ଅନେକ ଶ୍ରୀହରି କୀର୍ତ୍ତନ ଆରମ୍ଭ କଲାବେଳେ ସଙ୍କୀର୍ତ୍ତନୈକ ପିତରୌ ବୋଲି ଶ୍ରୀ ଗୌର ନିତାଇଙ୍କୁ ସମ୍ବୋଧନ କରନ୍ତି, କିନ୍ତୁ ଶ୍ରୀ ଗୌର କିଏ ଓ ଶ୍ରୀ ନିତାଇ କିଏ ତାହା ସେମାନେ କହି ପାରନ୍ତିନାହିଁ । ମାଳା ଓ ତିଳକ ଉତ୍କଳର ଅଧିକାଂଶ ଲୋକେ ଧାରଣ କରନ୍ତି, କିନ୍ତୁ ସେ ମାଳା ତିଳକ ଧାରଣର ମର୍ମ କଣ ସେମାନେ ବୁଝି ନାହାନ୍ତି । ଅନେକ ପୁଣି ସ୍ମୃତିବିଧି ବ୍ୟବସ୍ଥା କରନ୍ତି, ବଂଶପରମ୍ପରା କିମ୍ବା ଗୁରୁପରମ୍ପରା କ୍ରମେ ମନ୍ତ୍ର ଦେଇ ଆସୁଅଛନ୍ତି କିନ୍ତୁ ସେଥି ମଧ୍ୟରୁ ଅନେକେ ସେ ମନ୍ତ୍ରର ମର୍ମ କଣ ଓ ଗୌର ନିତ୍ୟାନନ୍ଦ କିଏ ଏହା ଜାଣନ୍ତିନାହିଁ । ଏହିରୂପେ ମହାପ୍ରଭୁଙ୍କ ଧର୍ମର ପ୍ରବର ଲୋକସଂଖ୍ୟା ହିସାବରେ ଅମ୍ଭ ଉତ୍କଳରେ ଅତି ବେଶି-ହେଲେହେଁ, ପ୍ରକୃତ ଧର୍ମତତ୍ତ୍ୱ ଜ୍ଞାନ ବିଷୟରେ ଉତ୍କଳ ବର୍ତ୍ତମାନ ବହୁ ପଛରେ ପଡ଼ିରହିଅଛି । ମଣିମୁକ୍ତାର ବ୍ୟବହାର କରି ମଧ୍ୟ ତାହାର ପ୍ରକୃତ ମୂଲ୍ୟ ନଜାଣି ସେମାନଙ୍କୁ କାଚ ତୁଲ୍ୟ ବ୍ୟବହାର କରୁଅଛନ୍ତି । ଏଭଳି ପତନର କାରଣ ଅନେକ ରହିଅଛି । ସେ ସମ୍ବନ୍ଧରେ ଆଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟନୁହେଁ।

ବୈଷ୍ଣବଧର୍ମର ଉଦାର ନୀତି ଏହି ଯେ କୌଣସି ଅପର ଧର୍ମକୁ ନିନ୍ଦା କରିବନାହିଁ । ଭଗବତ୍ ପ୍ରାପ୍ତି ବିଷୟକ ସାଧନ ବହୁପ୍ରକାର ଓ ଭଗ-ବତ୍ କୃପା ପ୍ରାପ୍ତିର ମଧ୍ୟ ବହୁ ତାରତମ୍ୟ ରହିଅଛି । ଅତଏବ ଯେ ଯେଉଁ ପଥ ଅବଲମ୍ବନ କରେ ତାହା ପକ୍ଷରେ ତାହାହିଁ ଉତ୍ତମ । ସମସ୍ତେ ଯେ ଏକପଥ ଅବଲମ୍ବନ କରିବେ, ଶ୍ରୀ ଭଗବାନଙ୍କର ମଧ୍ୟ ତାହା ଇଚ୍ଛାନୁହେଁ ବୋଲି ମୁଁ ଅନୁମାନ କରେଁ, କାରଣ ବିଚିତ୍ରଲୀଳ ଭଗବାନ ଭଜନପଥର ମଧ୍ୟ ବିଚିତ୍ରତା ଦେଖାଇ ଏକ ଲୀଳା ଆସ୍ୱାଦନ କରୁଅଛନ୍ତି । କେବେ କେହି କେହି ଏକ ପଥର ଦୁହାଇଦେଇ ପ୍ରକୃତ ତାହା ପରିତ୍ୟାଗପୂର୍ବକ ନିଜ କପୋଳକଳ୍ପିତ ଅନ୍ୟପଥରେ ଅପର ଲୋକଙ୍କୁ ଭୁଲାଇ ପ୍ରବର୍ତ୍ତନ କରାଇ-

ଅଛନ୍ତି । ଏଥିଦ୍ୱାରା ଅନେକ ସରଳମତି ବ୍ୟକ୍ତି ଭ୍ରମରେ ପଡ଼ିଅଛନ୍ତି । ସେମାନଙ୍କ ସୁବିଧା ପାଇଁ ମୁଁ ଅନିଚ୍ଛା ସତ୍ତ୍ୱେ କେତେକ କଳ୍ପିତ ଭ୍ରାନ୍ତ ମତରେ ଦର୍ଶାଇବାକୁ ଯାଉଅଛି । ମୁଁ ଏଥିଦ୍ୱାରା ନିଜକୁ ଅଭ୍ରାନ୍ତ ବୋଲି କହୁନାହିଁ କିମ୍ବା ମନରେ ମଧ୍ୟ ଧାରଣା କରୁନାହିଁ । ଲୋକଙ୍କର ମତ ଭିନ୍ନ ଭିନ୍ନ ହେବା ଅନିବାର୍ଯ୍ୟ, ଏହା ମୁଁ ଉପରେ କହିଅଛି । ଯେଉଁ ଅଦ୍ୱୈତାଚାର୍ଯ୍ୟ ୧୯ ବର୍ଷକାଳ ଐକାନ୍ତିକ ଭାବରେ ଗଙ୍ଗାଜଳ ଓ ତୁଳସୀଦ୍ୱାରା ଶ୍ରୀ ଶାଳଗ୍ରାମ ପୂଜା କରି ମହାପ୍ରଭୁଙ୍କୁ ଧରାରେ ଅବତୀର୍ଣ୍ଣ କରାଇଲେ, ତାହାଙ୍କର ପୁତ୍ର ଓ ଶିଷ୍ୟମାନଙ୍କ ମଧ୍ୟରେ କେହି କେହି ଶ୍ରୀ ଅଦ୍ୱୈତଙ୍କ ପ୍ରବର୍ତ୍ତିତ ମତ ତ୍ୟାଗକରି ନୂତନପଥ ଅବଲମ୍ବନ କରିଥିବାର ଶ୍ରୀଲ କୃଷ୍ଣଦାସ କବିରାଜ ଶ୍ରୀଚୈତନ୍ୟ ଚରିତାମୃତରେ ଉଲ୍ଲେଖ କରିଅଛନ୍ତି । ଯଥା—

ଆଚାର୍ଯ୍ୟେର ମତ ଯେଇ—ସେଇ ମତ 'ସାର' ।
ତାର ଆଜ୍ଞା ଲଙ୍ଘି ଚଲେ—ସେଇ ତ 'ଅସାର' ॥
(ଚୈଃ ଆଦି ୧୨)

ମୁଁ ଅନ୍ୟାନ୍ୟ ପ୍ରଚଳିତ ଧର୍ମମାନ ସମ୍ୟକ୍ ଆଲୋଚନା କରି ଦେଖି ନାହିଁ କିମ୍ବା ସେ ବିଷୟରେ ବିଶେଷ ତତ୍ତ୍ୱାନୁସନ୍ଧାନ କରି ନାହିଁ । ଘଟଣାକ୍ରମେ ଯାହା ଯାହା ମୋ ଚକ୍ଷୁରେ ପଡ଼ିଅଛି, ତାହାକୁ ଲକ୍ଷ୍ୟ କରି ମୁଁ ଏହା ଲେଖୁଅଛି । ଶ୍ରୀମନ୍ ଅଚ୍ୟୁତାନନ୍ଦ ଶ୍ରୀମନ୍ ବଳରାମ ପ୍ରଭୃତି ମହାପ୍ରଭୁଙ୍କର ପଞ୍ଚସଖା ଥିବାର ମୁଁ ଅନେକ ଉତ୍କଳବାସୀଙ୍କ ମୁଖରୁ ଶୁଣେ ଓ ସେମାନେ କହନ୍ତି ଏ ପାଞ୍ଚଜଣ ମହାପ୍ରଭୁଙ୍କ ସଖା ଆଉ ମହାପ୍ରଭୁଙ୍କ ମତହିଁ ପ୍ରଚାର କରିଅଛନ୍ତି । ଶ୍ରୀମାନ୍ ଅଚ୍ୟୁତାନନ୍ଦ ପ୍ରଭୃତି ଯେରୂପ ମହାତ୍ମା ଥିବାର ଶୁଣାଯାଏ, ସେମାନେ ଯେ ମହାପୁରୁଷ ଥିଲେ ଓ ନିଜ ନିଜ ମହିମା ଅଶେଷରୂପେ ପ୍ରକାଶ କରିଥିଲେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । କିନ୍ତୁ ସେମାନଙ୍କ ପ୍ରବର୍ତ୍ତିତ ଧର୍ମ ସମ୍ବନ୍ଧରେ ଶୂନ୍ୟସଂହିତା ନାମକ ଖଣ୍ଡିଏ ଗ୍ରନ୍ଥ ମୁଁ ପାଠ କରିଥିଲି । ସେ ଗ୍ରନ୍ଥ ଉକ୍ତ ମହାଜନମାନଙ୍କ

ପ୍ରକୃତ ମତ ଯେନ ରଚତ କିମ୍ବା ତାହାଙ୍କର ପରବର୍ତ୍ତୀ କେହି ଶିଷ୍ୟ ପ୍ରଶିଷ୍ୟ ସେ ମହାତ୍ମାମାନଙ୍କ ମତ ତ୍ୟାଗକରି ନିଜର ମତ ସେ ଗ୍ରନ୍ଥରେ ପ୍ରକାଶ କରିଅଛନ୍ତି, ତାହା ମୁଁ କହି ନ ପାରେଁ । ତେବେ ସେ ଗ୍ରନ୍ଥରୁ ଏହା ଦେଖାଯାଏ ଯେ ଗ୍ରନ୍ଥକର୍ତ୍ତା ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କୁ ମୂଳ ଧରି, ଏ ପଞ୍ଚମହାତ୍ମାଙ୍କୁ ତାହାଙ୍କର ସଖା ଥିବାର ପ୍ରକାଶ କରିଅଛନ୍ତି ଏବଂ ଉକ୍ତ ଗ୍ରନ୍ଥର ମତ ଶ୍ରୀମାନ୍ ମହାପ୍ରଭୁ ଓ ଶ୍ରୀଲ ସନାତନ ଗୋସ୍ୱାମୀଙ୍କର ଅନୁମୋଦିତ ବୋଲି ସେଥିରେ ଲେଖାଅଛି । କିନ୍ତୁ ଉକ୍ତଗ୍ରନ୍ଥରେ ଭକ୍ତିର ପ୍ରାଧାନ୍ୟ ପରିତ୍ୟାଗ ପୂର୍ବକ ଯୋଗ ଓ ଜ୍ଞାନର ପ୍ରାଧାନ୍ୟ ସ୍ଥାପିତ ହୋଇଅଛି । ସ୍ୱୟଂ ମହାପ୍ରଭୁ କିମ୍ବା ତାହାଙ୍କ ପ୍ରିୟପାତ୍ର ଯେ ବୈଷ୍ଣବଶାସ୍ତ୍ର ପ୍ରଣେତା ଶ୍ରୀମଦ୍ ଭାଗବତ ତୋଷଣୀ ନାମକ ଟୀକାର ରଚୟିତା, ଶ୍ରୀଲ ସନାତନ ଗୋସ୍ୱାମୀ ଯେ ଉକ୍ତ ମତ ପୋଷଣ କରିଥିଲେ ଏହା କଦାପି ସମ୍ଭବ ନୁହେଁ । ମୁଁ ଅନୁମାନ କରେଁ ମହାପ୍ରଭୁଙ୍କର ମତ ସେତେବେଳେ ପ୍ରବଳଭାବରେ ପ୍ରଚଳିତ ହେଉଥିବାରୁ ମହାପ୍ରଭୁଙ୍କୁ ନିଜ ଗ୍ରନ୍ଥକୁ ଟାଣି ନ ନେଲେ ଲୋକେ ତାହା ଆଦର କରିବେ ନାହିଁ ଏହି ହେତୁରୁ ସେ ଗ୍ରନ୍ଥର ରଚୟିତା କୌଶଳକ୍ରମେ ମହାପ୍ରଭୁ ଓ ସନାତନ ଗୋସ୍ୱାମୀଙ୍କୁ ସେ ଗ୍ରନ୍ଥରେ ଅବତାରଣ କରିଅଛନ୍ତି । ଶ୍ରୀ ଜଗନ୍ନାଥ ଚରିତାମୃତ ନାମକ ଏକ ନୂତନ ପ୍ରକାଶିତ ଗ୍ରନ୍ଥରେ ଦେଖିଲି ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ସମଦର୍ଶୀ ଓ ନିରପେକ୍ଷ, କିନ୍ତୁ ତାହାଙ୍କର ଅତି ପ୍ରିୟ ବଙ୍ଗଦେଶୀ ପାର୍ଷଦମାନେ ଈର୍ଷାପରବଶ ହୋଇ ଉକ୍ତ ଗ୍ରନ୍ଥର ନାୟକ ଶ୍ରୀ ଜଗନ୍ନାଥ ଦାସଙ୍କୁ ପରିତ୍ୟାଗ କରିବାକୁ ମହାପ୍ରଭୁଙ୍କୁ ଅନୁରୋଧ କଲେ । ମହାପ୍ରଭୁ ସେଥିରେ ସମ୍ମତ ନ ହେବାରୁ ସେ ବଙ୍ଗବାସୀ ଭକ୍ତମାନେ ମହାପ୍ରଭୁଙ୍କୁ ତ୍ୟାଗ କରି ନିଜ ଦେଶକୁ ଚାଲିଗଲେ । ମହାପ୍ରଭୁଙ୍କର କି ଉତ୍କଳ, କି ବଙ୍ଗ, କି କଳିଙ୍ଗ ସମସ୍ତ ପ୍ରଦେଶର ପ୍ରିୟ ପାର୍ଷଦମାନେ ତାହାଙ୍କର ନିତ୍ୟ ପାର୍ଷଦ ଓ ନିତ୍ୟ ଧାମରୁ ଆସିଥିଲେ । ସେମାନଙ୍କ ମନରେ ଓଡ଼ିଆ ଓ ବଙ୍ଗାଳୀ ଏ ଭେଦଜ୍ଞାନ ଆଦୌ ନ ଥିଲା । ସେମାନେ ଯବନମାନଙ୍କ ସନ୍ତୁଷ୍ଟିର

ଦେଖୁଥିଲେ । ସେମାନଙ୍କଠାରେ ଏଭଳି ଈର୍ଷାଦ୍ଵେଷ ଯତ୍ସାମାନ୍ୟରେ ମଧ୍ୟ ରହିବା ଅସମ୍ଭବ । ଏ ଈର୍ଷାଦି ଏହି ଭଦ୍ରବଙ୍ଗଂର ନିଜସ୍ଵ ତାହା ଚୈତନ୍ୟ ବଙ୍ଗ୍ୟର ପାର୍ଷଦମାନଙ୍କୁ ସ୍ପର୍ଶ କରିବ ପାରିନ ।

ଶ୍ରୀଳ ଗଦାଧର ପଣ୍ଡିତ, ଶ୍ରୀଳ ସ୍ଵରୂପ ଗୋସାଇଁ, ଶ୍ରୀଳ ସାର୍ବଭୌମ ଭଟ୍ଟାଚାର୍ଯ୍ୟ, ଶ୍ରୀଳ ରଘୁନାଥ ଦାସ, ଠାକୁର ଶ୍ରୀ ହରିଦାସ, ଶ୍ରୀଳ ରୂପ-ଗୋସାଇଁ, ଶ୍ରୀଳ ସନାତନ-ଗୋସାଇଁ ପ୍ରଭୃତି ମହାପ୍ରଭୁଙ୍କର ଅନ୍ତରଙ୍ଗ ଭକ୍ତମାନେ ବଙ୍ଗବାସୀ ଓ ଶ୍ରୀଳ ରାମାନନ୍ଦ ରାୟ, ଶ୍ରୀଳ କାଶୀମିଶ୍ର, ଶ୍ରୀଳ ଶିଖି ମହାନ୍ତି, ଶ୍ରୀଳ ଜଗନ୍ନାଥ ମହାନ୍ତି, ମହାରାଜା ଶ୍ରୀ ପ୍ରତାପରୁଦ୍ର ଏମାନେ ଉତ୍କଳବାସୀ । ଏ ଉଭୟ ଦଳର କପରି ଅଭେଦ ପ୍ରୀତି ଥିଲା, ଶ୍ରୀ ଚୈତନ୍ୟ ଚରିତାମୃତ ଓ ଶ୍ରୀଚୈତନ୍ୟ ଭାଗବତ ତାହାର ଉଜ୍ଜ୍ୱଳ ସାକ୍ଷ୍ୟ ଦେଉଅଛନ୍ତି । ଏପରି ଶ୍ରୀଳ କୃଷ୍ଣଦାସ କବିରାଜ ଏକସ୍ଥାନରେ ମହାପ୍ରଭୁଙ୍କର ଅତି ବିଶେଷ ପ୍ରିୟପାତ୍ର ସାଢ଼େ ତିନିଜଣ ବୋଲି ଉଲ୍ଲେଖ କରିଅଛନ୍ତି । ( ଶ୍ରୀଳ ସ୍ଵରୂପ ଗୋସାଇଁ, ଶ୍ରୀ ରାମାନନ୍ଦ ରାୟ, ଶ୍ରୀ ଶିଖି ମହାନ୍ତି, ଓ ତାହାଙ୍କର ଭଗ୍ନୀ ଶ୍ରୀମତୀ ମାଧବୀ ଦାସୀ (ଅର୍ଦ୍ଧ) ଏହିରୂପ ୩ ½ ଜଣ ) । ଏଥିରୁ ଦେଖାଯାଏ ଏ ୩½ ଜଣଙ୍କ ମଧ୍ୟରୁ ତିନିଜଣ ଅମ୍ଭ ଉତ୍କଳୀୟ ବଙ୍ଗାଳୀ ଓଡ଼ିଆ ଏପରି କୌଣସି ଭେଦ ସେମାନଙ୍କ ମନରେ ଥିଲେ ବଙ୍ଗୀୟ କବି ଚୂଡ଼ାମଣି ଶ୍ରୀ କୃଷ୍ଣଦାସ କବିରାଜ ତାଙ୍କ ଗ୍ରନ୍ଥରେ ଏ ତିନିଜଣ ଓଡ଼ିଆଙ୍କୁ ଏ ଭଳି ଉଚ୍ଚସ୍ଥାନ ଦେଇ ଥାଆନ୍ତେ କି ? ମହାପ୍ରଭୁଙ୍କ ଅପ୍ରକଟ ପର୍ଯ୍ୟନ୍ତ ଓ ତହିଁରେ ମଧ୍ୟ ଅନେକ ମହାପ୍ରଭୁଙ୍କ ବଙ୍ଗଦେଶୀୟ ପ୍ରିୟ ପାର୍ଷଦ ପୁରୀରେ ଥିଲେ ଓ ମହାପ୍ରଭୁଙ୍କ ଅପ୍ରକଟ ପରେ ବଙ୍ଗଳାର କବିବର ଶ୍ରୀ କବିକର୍ଣ୍ଣପୁର ଚୈତନ୍ୟଚନ୍ଦ୍ରୋଦୟ ନାଟକ ରଚନା କରି ତାହା ଅଭିନୟ କରାଇ ମହାରାଜା ପ୍ରତାପରୁଦ୍ର ଓ ଅପର ମହାପ୍ରଭୁଙ୍କ ପାର୍ଷଦମାନଙ୍କର ବିରହ ଦୁଃଖ କିଛି ଶାନ୍ତ କରାଇଥିଲେ । ଶ୍ରୀଳ ଜଗନ୍ନାଥ ଦାସ ଏକ ପ୍ରଧାନ ମହାପୁରୁଷ । ତାହାଙ୍କ ରଚିତ ଓଡ଼ିଆ ଶ୍ରୀମଦ୍ଭାଗବତ ଆଜି ଉତ୍କଳରେ ଘରେ ଘରେ ପୂଜିତ ଓ ପଠିତ ହେଉ

ଅଛନ୍ତି । ଅତଏବ ଦୁଇ ଦଗରେ ମହାପୁରୁଷ ମାନଙ୍କର ବର୍ତ୍ତମାନ । ଏପର ସ୍ଥଳେ ଏ ଓଡ଼ିଆ ବଙ୍ଗାଳୀ ବିବାଦ ଏ ନୂତନ ପୁସ୍ତକରେ କେଉଁଠାରୁ ଆସି ସ୍ଥାନ ପାଇଲା, ମୁଁ କଛି ସ୍ଥିର କର ପାରୁନାହିଁ । ଏହା ବୋଧହୁଏ କୌଣସି ପରବର୍ତ୍ତୀ ଲୋକର କପୋଲକଳ୍ପିତ ।

ସେ ପଞ୍ଚମହାପୁରୁଷଙ୍କ ଶ୍ରୀଚରଣ ମୋର ଶିରୋଧାର୍ଯ୍ୟ । ସେମାନେ ଯେଉଁ ମତାବଲମ୍ବୀ ଥାଉନ୍ତୁ, ସେମାନେ ଯେ ଉତ୍କଳରେ ମହାପୂଜ୍ୟ ଏଥିରେ ସନ୍ଦେହ ନାହିଁ । ତେବେ ଏତକ ମୋର ବକ୍ତବ୍ୟ ଯେ ଏହି ପ୍ରକାଶିତ ଗ୍ରନ୍ଥମାନଙ୍କର ମତ ହୁଏ ତ ସେ ମହାପୁରୁଷମାନଙ୍କର ଅନୁମୋଦିତ ନୁହେଁ କିମ୍ବା ସେ ମହାପୁରୁଷମାନଙ୍କର ମତ ମହାପ୍ରଭୁଙ୍କ ପ୍ରବର୍ତ୍ତିତ ମତରୁ ଭିନ୍ନ ।

ତତ୍ପରେ ଆଉ ଏକଶ୍ରେଣୀର ସାଧକ ନୂତନ ବାହାରିଛନ୍ତି । ସେମାନେ ମହାପ୍ରଭୁଙ୍କୁ ମାନନ୍ତି କିନ୍ତୁ ରୂପଗୋସ୍ୱାମୀଙ୍କ ପ୍ରଦର୍ଶିତ ପଥ ଅନୁସରଣ କରନ୍ତିନାହିଁ । ମହାପ୍ରଭୁ ନିଜେ କିଛି ଶାସ୍ତ୍ରାଦି ପ୍ରଣୟନ ନ କରି ଶ୍ରୀଳ ସନାତନ ପ୍ରଭୃତି ରୂପଗୋସ୍ୱାମୀଙ୍କୁ ଶକ୍ତି ସଞ୍ଚାରପୂର୍ବକ ଲୁପ୍ତତୀର୍ଥ ଉଦ୍ଧାର ଓ ଶାସ୍ତ୍ରପ୍ରଣୟନର ଭାର ଅର୍ପଣ କରିଥିଲେ । ଉକ୍ତ ରୂପ ଗୋସାଇଁ ପ୍ରଣୀତ ଶାସ୍ତ୍ର ଓ ସେମାନଙ୍କ ଆଦେଶରେ ସାଧାରଣ ବୋଧଗମ୍ୟ ହେବାପାଇଁ ବଙ୍ଗଭାଷାରେ ରଚିତ ଶ୍ରୀ ଚୈତନ୍ୟଚରିତାମୃତ ଏମାନ ଆମ୍ଭ ଗୌଡ଼ୀୟ ସମ୍ପ୍ରଦାୟର ପ୍ରାମାଣିକ ଗ୍ରନ୍ଥ ବୋଲି ଗୃହୀତ । ଅତଏବ ଯେଉଁମାନେ ଉକ୍ତ ଗୋସ୍ୱାମୀଙ୍କ ପ୍ରବର୍ତ୍ତିତ ମତକୁ ଅନାଦର-ପୂର୍ବକ ମହାପ୍ରଭୁଙ୍କ ନିଜମତ ବୋଲି କିଛି ନୂତନ ମତ ପ୍ରଚାର କରନ୍ତି ତାହା ପ୍ରକୃତ ମହାପ୍ରଭୁଙ୍କ ଅନୁମୋଦିତ ବୋଲି ବୋଲିହୋଇ ନ ପାରେ । ଅତଏବ ଗୌଡ଼ୀୟ ସମ୍ପ୍ରଦାୟରେ ନୂତନ ପ୍ରବେଶକାରୀମାନଙ୍କର ଏ ବିଷୟରେ ମଧ୍ୟ ସାବଧାନ ହେବା ଆବଶ୍ୟକ । ସେମାନେ ଯେପରି ରୂପ ଗୋସ୍ୱାମୀଙ୍କ ମତକୁ ଅବହେଳା ନ କରନ୍ତି । ଉତ୍କଳର ଉଦ୍ଭାବିତ

ମାନଙ୍କରେ ଏକ ନୂତନ ମତ ପ୍ରଚଳିତ ହେବାକୁ ଆରମ୍ଭ କରିଅଛି । ସେମାନଙ୍କ ମତରେ ମହାପ୍ରଭୁ ଶ୍ରୀମତୀ ବିଷ୍ଣୁପ୍ରିୟାଙ୍କ ସହ ଉପାସ୍ୟ । ଶ୍ରୀକୃଷ୍ଣ କିମ୍ବା ଶ୍ରୀରାଧା ଉପାସ୍ୟ ନୁହନ୍ତି । ସେମାନେ "ହରେକୃଷ୍ଣ" ମହାମନ୍ତ୍ର ଜପ ନ କରି ଛ ୧୬ ଶ ୩୨ ଅକ୍ଷରରେ "ହରେଗୌର" ମନ୍ତ୍ର ଜପ କରନ୍ତି । ମହାପ୍ରଭୁ ସର୍ବଅବତାରୀ ନୂଜ ନାରାୟଣ । ତାହାଙ୍କୁ ଯେ ଯେପରି ଭାବରେ ଭଜିବ, ସେ ତାହାଙ୍କୁ ସେହିପରି ଭାବରେ ପାଇବ । ସେମାନେ ଯେତେବେଳେ ମହାପ୍ରଭୁ ଓ ତାହାଙ୍କ ପ୍ରିୟ ସହଧର୍ମିଣୀ ବିଷ୍ଣୁପ୍ରିୟାଙ୍କୁ ଭଜିଅଛନ୍ତି, ତେତେବେଳେ ସେମାନେ ଆମ୍ଭମାନଙ୍କର ଶତଶତ ସହସ୍ର ସହସ୍ର ପ୍ରଣାମର ପାତ୍ର । ଶ୍ରୀଭଗବାନଙ୍କୁ ଭଜନ କଲେ ତାହା କଦାପି ବ୍ୟର୍ଥ ହୁଏ ନାହିଁ । ଶ୍ରୀଭଗବାନ ଭକ୍ତର ଭାବ ଜାଣି ଓ ଉପଯୁକ୍ତତା ଦେଖି ଫଳ ପ୍ରଦାନ କରନ୍ତି । ଅତଏବ ଏହି ସବୁ ନବ ନବ ମତରେ ଭଜନକାରୀ ବ୍ୟକ୍ତିମାନେ କେହି ମଥୁରାରେ, କେହି ଦ୍ୱାରିକାରେ ଶ୍ରୀକୃଷ୍ଣଙ୍କୁ ପାଇ ପାରନ୍ତି, କେହି ବା ବୈକୁଣ୍ଠାଧିପତି ଶ୍ରୀଲକ୍ଷ୍ମୀନାରାୟଣଙ୍କୁ ପାଇ ପାରନ୍ତି । କିନ୍ତୁ ରୂପ ଗୋସ୍ୱାମୀଙ୍କ ଅନୁଗତ୍ୟରେ ଶ୍ରୀଗୌରଚନ୍ଦ୍ର ଓ ଶ୍ରୀରାଧାକୃଷ୍ଣଙ୍କୁ ଭଜନ ନ କଲେ କେବେ କେହି ରସିକଶେଖର ବ୍ରଜେନ୍ଦ୍ରନନ୍ଦନ ଶ୍ରୀ ଶ୍ୟାମସୁନ୍ଦରଙ୍କର ଶ୍ରୀ ବୃନ୍ଦାବନରେ ଗୋପଗୋପୀସମେତରେ ସେବା ପାଇପାରିବ ନାହିଁ । ଏଠର ଶ୍ରୀଗୌରାଙ୍ଗଦେବ ଶ୍ରୀରାଧାଙ୍କର ଭାବ ଆସ୍ୱାଦନ ପାଇଁ ତାହାଙ୍କ ଭାବକାନ୍ତି ଧାରଣପୂର୍ବକ ନଦୀୟାରେ ଅବତୀର୍ଣ୍ଣ । ଯେ ଯେ କୁରୁପ ବହ୍ୱଳ ହୋଇ ରାଧାଭାବ ଆସ୍ୱାଦନ କରୁଥିଲେ ତାହାମଧ୍ୟ ପୂର୍ବରେ ଦର୍ଶାଇଅଛି । ଏପରି ସ୍ଥଳେ ଶ୍ରୀରାଧାଙ୍କୁ ବାହାର କରିଦେଲେ ଶ୍ରୀଗୌରଙ୍କର ଗୌରତ୍ୱ ଆଉ କି ରହିଲା ! ଯେଉଁ ରାଧାଙ୍କର ଗୋକୁଳରେ ଉପପତି ଭାବରେ ଶ୍ରୀକୃଷ୍ଣଙ୍କୁ ଭଜନ କରିବାର ଲାଳସମହତ୍ୱ ଶ୍ରୀ ଗୋଲୋକବିଳାସକୁ ବଳି ପଡ଼ିଅଛି, ଯେଉଁ ବ୍ରଜବିଳାସର ଭାବ ସମ୍ୟକ ଆସ୍ୱାଦନ ପାଇଁ ଶ୍ରୀଗୌରଙ୍କର ଏ ଅବତାର, ସେହି ଶ୍ରୀରାଧାଙ୍କୁ ବାଦ ଦେଲେ ଗୌରଲୀଳାର ମାଧୁର୍ଯ୍ୟ ଯେ ଏକାବେଳେ ଶୂନ୍ୟ ହୋଇ

ପଡ଼ିବ । ଶ୍ରୀକୃଷ୍ଣ ସର୍ବ ଅବତାର ଓ ଅନ୍ୟ ସମସ୍ତ ଈଶ୍ୱରମାନେ ତାହାଙ୍କ ଅଂଶ ବା କଳା । ଶ୍ରୀରାଧା ମଧ୍ୟ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅବତାରିଣୀ ଓ ଅନ୍ୟ ଲକ୍ଷ୍ମୀମାନେ ତାହାଙ୍କର ଅଂଶ ବା କଳା । ଅମ୍ଭ ବୈଷ୍ଣବ ଗୋସ୍ୱାମୀମାନେ ଶ୍ରୀମଦ୍-ଭାଗବତାଦି ଶାସ୍ତ୍ରମାନଙ୍କରୁ ଏହା ପ୍ରମାଣ କରି ଶାସ୍ତ୍ର ରଚନା କରିଅଛନ୍ତି । ଶ୍ରୀଲ କୃଷ୍ଣଦାସ କବିରାଜ ମଧ୍ୟ ସେହି ପଥ ଅବଲମ୍ବନ କରିଅଛନ୍ତି । ଅବଶ୍ୟ ଯେମାନେ କେହି ଶ୍ରୀମତୀ ବିଷ୍ଣୁପ୍ରିୟା ଦେବୀଙ୍କୁ ଅବମାନନା କରି ନାହାନ୍ତି। ସେମାନେ ତାହାଙ୍କର ଯୋଗ୍ୟଆସନ ତାହାଙ୍କୁ ପ୍ରଦାନ କରିଅଛନ୍ତି । କିନ୍ତୁ ଏହି ନବମତରେ ଯେ ପୁସ୍ତକମାନ ପ୍ରଣୀତ ହେଉଅଛି, ସେଥିରେ ବିଷ୍ଣୁପ୍ରିୟାଙ୍କୁ ସର୍ବୋଚ୍ଚସ୍ଥାନ ଦିଅ ହୋଇ ଶ୍ରୀରାଧାଙ୍କ ତୁଲ୍ୟ ଶତ ଶତ ଦାସୀ ତାହାଙ୍କ ପରିକର ଥିବାର ଲେଖାଅଛି । କିନ୍ତୁ ଏହି ଏକ ବିକ୍ରିଦ୍ୱାର ଶ୍ରୀ ଗୋସ୍ୱାମୀମାନଙ୍କ ରଚିତ ଗ୍ରନ୍ଥ ଓ ଶ୍ରୀଚୈତନ୍ୟ ଚରିତାମୃତର ମତ ସବୁ ଉଲ୍ଟିଗଲା ନାହିଁ କି ? ଏଭଳି କଥାର ମୋତେ ଅଳ୍ପ କଲମ ଧରି ଲେଖିବାକୁ ହେଲା । କେବଳ ସରଳମତି ପ୍ରବେଶକମାନଙ୍କ ଭ୍ରମ ନିବାରଣ ପାଇଁ ମୁଁ ଏହି କ୍ଷୁଦ୍ରସ୍ୱରଦାରକ ପ୍ରସଙ୍ଗଟି ଏଥିରେ ସନ୍ନିବେଶ କଲି । କ୍ଷମାଶୀଳ ବୈଷ୍ଣବଗଣ ଯେପରି ମୋତେ କ୍ଷମା ଦିଅନ୍ତି ଏହି ମୋର ପ୍ରାର୍ଥନା । ( ୨୯ କ )

ଏପରି ଅବଶିଷ୍ଟ ଅବତାରମାନଙ୍କର ଅଭାବ ନାହିଁ । କେହି କୌଣସି ଷ୍ଟେମ କିଛି ସିଦ୍ଧି ଦେଖାଇ ପାରିଲେ ଆପଣାକୁ ଶ୍ରୀଭଗବାନଙ୍କର ଅବତାର ବୋଲି ପରିଚୟ ଦେଉଅଛନ୍ତି ଓ ଅନେକେ ସେ ଅବତାରମାନଙ୍କୁ ପୂଜାକରି ସେ ଅବତାରଗ୍ରନ୍ଥକୁ ପୋଷଣ କରୁଅଛନ୍ତି । କେତେକ ସ୍ୱାର୍ଥପରଲୋକ ସ୍ୱାର୍ଥସିଦ୍ଧି ନିମିତ୍ତ ଏପରି କରୁଅଛନ୍ତି ଓ କେତେକ ଭ୍ରମରେ ପଡ଼ି ସେଥିର ଆଦର କରୁଅଛନ୍ତି । ଏମନ୍ତ କି କେହି କେହି ଏରୂପ ଅବତାର ନାମସଙ୍କୋଚରେ ସଚଳନ ଶ୍ରୀତୁଳସୀ ପତ୍ରଦ୍ୱାରା ଆପଣାର ପାଦ ପୂଜା କରାଉ ଅଛନ୍ତି ଓ ଭ୍ରାନ୍ତ ଲୋକେ

ଅବାଧରେ ଶ୍ରୀତୁଳସୀ ଯେମାନଙ୍କ ପାଦରେ ଚଢ଼ାଉ ଅଛନ୍ତି । କେହି କେହି ଅବତାର, ଗଙ୍ଗା ମହାଗଙ୍ଗାମାନଙ୍କଠାରେ କଳେ କଳେ ଉପସ୍ଥିତ ହୋଇ କହୁଛନ୍ତି, ଅମ୍ଭେ ଶ୍ରୀଭଗବାନଙ୍କର ଅବତାର । ଅମ୍ଭ ଅଙ୍ଗରେ ଶଙ୍ଖଚକ୍ରାଦି ଚିହ୍ନମାନ ଆପଣ କଳେ ପରୀକ୍ଷା କରି ଦେଖି ନେଉନ୍ତୁ । ଏରୂପ ହାସ୍ୟାସ୍ପଦ ଘଟଣା ମୋର କପୋଳକଳ୍ପିତ ନୁହେ, ଏହା ମୋର ଚକ୍ଷୁର ଅନୁଭୂତ ।

ଏହିରୂପେ ନାନା ନବ ନବମତରେ ଅନ୍ଧକାର ହେଉଅଛି ଯେଉଁମାନେ ଶ୍ରୀଗୌରଚନ୍ଦ୍ରଙ୍କର ପ୍ରକୃତ ମତ ଜାଣିବାକୁ ସମୁତ୍ସୁକ, ସେମାନେ ଶ୍ରୀଚୈତନ୍ୟ ଚରିତାମୃତ ଓ ରୂପ ଗୋସ୍ୱାମୀଙ୍କ ପ୍ରଣୀତ ଶାସ୍ତ୍ର ସମ୍ୟକ ଆଲୋଚନା କରନ୍ତୁ ଓ ଶାସ୍ତ୍ରର ପ୍ରକୃତମର୍ମ୍ମ ହୃଦୟରେ ସ୍ଫୁର୍ତ୍ତି ହେବା-ପାଇଁ ଶ୍ରୀମାନ୍ ଗୌରଚନ୍ଦ୍ର ଓ ଶ୍ରୀମାନ୍ ନିତ୍ୟାନନ୍ଦଚନ୍ଦ୍ରଙ୍କୁ ଅନୁଗ୍ରହ ପ୍ରାର୍ଥନା କରନ୍ତୁ । ତାହାହେଲେ ଦୟାସାଗର ସେ ଦୁଇଭାଇ ସମସ୍ତ ଭ୍ରମ ପ୍ରମାଦରୁ ନିଶ୍ଚୟ ନିଶ୍ଚୟ ରକ୍ଷା କରିବେ ।

ଏଠାରେ ମୁଁ ଶ୍ରୀଲ ବ୍ରଧାରମଣ ଚରଣ ଦାସ ବଡ଼ ବାବାଜୀ ଜମା ତାହାଙ୍କ ମତ ସମ୍ବନ୍ଧରେ କିଛି ଲେଖିବାକୁ ଇଚ୍ଛା କରୁନାହିଁ । ଏ ଅଧମ ସେ ମହାତ୍ମାଙ୍କ ଦର୍ଶନ ୨ । ୩ ଥର ଲାଭ କରିଥିଲା ଓ ସେ ଏ ଅଧମକୁ କୃପାକରି ସ୍ୱପ୍ନରେ ମଧ୍ୟ କେତେଥର ଦର୍ଶନ ଦାନ ଦେଇଅଛନ୍ତି । କିନ୍ତୁ ତାହାଙ୍କ ଶିଷ୍ୟ ପ୍ରଶିଷ୍ୟମାନଙ୍କମଧ୍ୟରେ ବର୍ତ୍ତମାନ ଦୁଇଦଳ ସୃଷ୍ଟି ହୋଇଥିବାରୁ ସେ ଦୁଇଦଳ ଏକମତ ନ ହେବା ପର୍ଯ୍ୟନ୍ତ ମୁଁ ତାହାଙ୍କ ବିଷୟରେ ନୀରବ ।

ବର୍ତ୍ତମାନ ଆଉ ଏକ ଅତଗଢ଼ତ ଲଜ୍ଜାର ବିଷୟ ଆଲୋଚନା କରିବାକୁ ଯାଉଅଛି । ବଙ୍ଗଦେଶରେ ସହଜିଆ ବାଉଲ ପନ୍ଥା ବରବେଶ ପ୍ରଭୃତି ନାନାଉପମତର ସୃଷ୍ଟି ହୋଇଅଛି । ସେମାନେ ପ୍ରକୃତ ସେବ

ସାଧନ କରନ୍ତି, ତେବେ ସେମାନେ ପ୍ରକାଶ୍ୟରେ ତାହା କରୁଥିବାରୁ ଓ ଭିନ୍ନ ଭିନ୍ନ ବେଶ ମଧ୍ୟ ଧାରଣ କରୁଥିବାରୁ ସେମାନଙ୍କୁ ସହଜରେ ଚିହ୍ନାଯାଏ । ଅନ୍ୟ ଉତ୍କଳରେ ସେସବୁର ତେତେ ବିସ୍ତାର ନାହିଁ । କିନ୍ତୁ ଯେଉଁ ଏକଗଡ଼ିଆ ମତର ପ୍ରଚାର ଦେଖାଯାଏ ତାହାକୁ ପ୍ରଚ୍ଛନ୍ନ ସହଜିଆ ବୋଲି ନାମ ଦିଆଯାଇ ପାରେ । ସେ ଦଳର ବୈଷ୍ଣବମାନେ ପ୍ରକୃତିସହ ଗୋପନରେ ସାଧନ କରନ୍ତି । ମାତ୍ର ଶ୍ରୀକୃଷ୍ଣଙ୍କୁ ଭୋଗ ଦେଇ ସେହି ପ୍ରସାଦ ସେବନ କରନ୍ତି ଓ ଅପ୍ରାପ୍ତ ବୟସ୍କା ୧୨।୧୩ ବର୍ଷ ପ୍ରାୟ ବାଳିକାକୁ କିଶୋରୀ ସଜାଇ ପୂଜା କରନ୍ତି । ଆଉ ଯେ ସବୁ ଅକଥନୀୟ କାର୍ଯ୍ୟ କରନ୍ତି ତାହା ଲେଖିବା ଯୋଗ୍ୟ ନୁହେଁ । ଏରୂପ ବୈଷ୍ଣବ ବୈଷ୍ଣବୀ ବା ଭକ୍ତଙ୍କ ସଂଖ୍ୟା କିଛି କମ ନୁହେଁ । ମୁଁ ବୋଧ କରେ ଲୋକେ ଶ୍ରୀକୃଷ୍ଣ ଭକ୍ତିଦ୍ୱାରା ମାୟାଙ୍କ ରାଜ୍ୟରୁ ବାହାରି ଯାଉଥିବାରୁ ମାୟାଦେବୀ କୌଶଳପୂର୍ବକ ଏହି ପ୍ରକ୍ରିୟା ସେମାନଙ୍କ ମଧ୍ୟରେ ପ୍ରବର୍ତ୍ତାଇ ସେମାନଙ୍କୁ ନିଜ ଅଧିକାରକୁ ଟାଣି ନେଇ ଅଛନ୍ତି । ଏଥିଯୋଗୁଁ କେତେ କେତେ ଭ୍ରୂଣହତ୍ୟା ଓ ଶିଶୁହତ୍ୟା ଯେ ସମ୍ପାଦିତ ହୋଇ ଅଛି, ତାହାର ସୀମା ନାହିଁ । ସେମାନେ ନିଜ ଇନ୍ଦ୍ରିୟ ଚରିତାର୍ଥ ପାଇଁ ସରଳମତି ଯୁବକ ଯୁବତୀମାନଙ୍କୁ ଶାସ୍ତ୍ରର ନାନା କୂଟ ଅର୍ଥ ପ୍ରଦର୍ଶନ କରାଇ ଭୁଲାଇ ଦେଉଅଛନ୍ତି । ସାଧାରଣ ଯୁବକଯୁବତୀମାନେ ମନେ କରୁଛନ୍ତି ଧର୍ମଉପାର୍ଜନ କରିବା ଓ ନିଜ ଇନ୍ଦ୍ରିୟ ଚରିତାର୍ଥ କରିବା ଯଦି ଏହାଦ୍ୱାରା ଏ ଦୁଇ ସହଜରେ ମିଳିଲା ତେବେ ଏହା କି ଛାଡ଼ିବାର କଥା । ସେମାନଙ୍କର ଶିକ୍ଷାଦାତାମାନେ ଚୈତନ୍ୟ ଚରିତାମୃତରେ ଉଦ୍ଧୃତ ଶ୍ରୀମଦ୍ଭାଗବତର ନିମ୍ନ ଶ୍ଳୋକଟିକୁ ସଂସ୍କୃତ ଭାଷା ଅନଭିଜ୍ଞ ଲୋକଙ୍କ ଠାରେ ନାନା କୁତ୍ସିତ ଭାବରେ ବୁଝାଇ ଦିଅନ୍ତି ।

ଅନୁଗ୍ରହାୟ ଭକ୍ତାନାଂ ମାନୁଷଂ ଦେହମାଶ୍ରିତଃ ।
ଭଜତେ ତାଦୃଶୀଃ କ୍ରୀଡ଼ାଃ ଯାଃ ଶ୍ରୁତ୍ୱା ତତ୍ପରୋ ଭବେତ ॥
( ଚୈଃ ଅଦ ୪ର୍ଥ )

ଶ୍ରୀମଦ୍ଭାଗବତରେ ମହାରାଜା ଶ୍ରୀ ପରୀକ୍ଷିତ ଉପସ୍ଥିତ ଶ୍ରୋତାବର୍ଗଙ୍କ ମଧ୍ୟରେ ଶ୍ରୀକୃଷ୍ଣଙ୍କ ରାସଲୀଳା ପ୍ରସଙ୍ଗ ଯଦି କାହାର ସନ୍ଦେହ ହୋଇଥାଏ ତାହା ଦୂର କରାଇ ଦେବାପାଇଁ ଓ ଭବିଷ୍ୟତ ଶ୍ରୋତାମାନଙ୍କ ସନ୍ଦେହ ମୋଚନ ପାଇଁ ଶ୍ରୀ ଶୁକଦେବ ଗୋସାଇଁଙ୍କୁ ପଚାରିଥିଲେ, "ଶ୍ରୀକୃଷ୍ଣ ଆପ୍ତ-କାମ ହୋଇ କି ପରଦାରା ସହ ଏରୂପ ରାସଲୀଳା କଲେ"। ସେହି ପ୍ରଶ୍ନର ଉତ୍ତରରେ ଶ୍ରୀ ଶୁକଦେବ ଗୋସାଇଁ ଅନ୍ୟାନ୍ୟ ଶ୍ଲୋକ ସହ ଏହି ଉପରୋକ୍ତ ଶ୍ଲୋକଟି କହିଥିଲେ । ଏହାର ଅର୍ଥ ଏହି ଯେ ଭକ୍ତମାନଙ୍କ ଅନୁଗ୍ରହପାଇଁ ଶ୍ରୀକୃଷ୍ଣ ମନୁଷ୍ୟ ରୂପରେ ପ୍ରକଟ ହୋଇ ଯେଉଁ ସେହି ମନୋହର ଲୀଳା କରି-ଥିଲେ । ସେହି ଲୀଳା ବିଷୟ ଶ୍ରବଣକରି ମନୁଷ୍ୟମାନେ ଶ୍ରୀକୃଷ୍ଣଙ୍କ ପ୍ରତି ଅନୁରକ୍ତ ହେବେ । ଶ୍ରୀକୃଷ୍ଣଙ୍କର ଗୋପାଙ୍ଗନାଙ୍କ ସହ ଯେ କିରୂପ ଲୀଳା ତାହା ମୁଁ ଏହି ପ୍ରବନ୍ଧରେ ଆଗରୁ ବୁଝାଇ ଅଛି । କିନ୍ତୁ ସେହି ଶିକ୍ଷା-ଦାତାମାନେ ଶ୍ଲୋକରେ ବ୍ୟବହୃତ "ତତ୍ପରଃ" ଏହି ଶବ୍ଦର ଭଗବତ-ପରାୟଣ ଅର୍ଥ ସ୍ଥାନରେ ତାହାଙ୍କ (ଶ୍ରୀକୃଷ୍ଣଙ୍କ) ପରି ଏହି ରୂପ ଅନର୍ଥମୂଳକ ଅର୍ଥ ପ୍ରତିପାଦନ କରି ସରଳମତି ଯୁବକଯୁବତୀମାନଙ୍କୁ ନାଚି ୨ ରାସଲୀଳା କରିବାକୁ ପ୍ରବର୍ତ୍ତାଇ ଦିଅନ୍ତି । ଏବଂ ଶ୍ରୀ କବିରାଜ ଗୋସାଇଁଙ୍କ ବ୍ୟବହୃତ ପଦ୍ୟ ।

ଭଜେତ୍ କ୍ରିୟା ବିଧିଲିଙ୍ ସେଇ ଇହା କୟ ।
କର୍ତ୍ତବ୍ୟ ଅବଶ୍ୟ ଏଇ, ଅନ୍ୟଥା ପ୍ରତ୍ୟବାୟ ॥

( ଆଦି ୪ )

ଏଥିର "ଭଜେତ୍" କ୍ରିୟା ପଦଟି "ବିଧିଲିଙ୍" ରେ ନିଷ୍ପନ୍ନ । ଅତଏବ ବ୍ୟାକରଣ ନିୟମାନୁସାରେ ଶ୍ରୀକୃଷ୍ଣପରାୟଣ ହେବା ନିଶ୍ଚୟ କର୍ତ୍ତବ୍ୟ ଓ ନ କଲେ ହାନି ଏହି ପ୍ରକୃତ ଅର୍ଥ ନ ଦେଇ କିମ୍ବା ତାହା ବୁଝିବାକୁ ଚେଷ୍ଟା ନ କରି ନିଜ କୁମତର ପୋଷଣାର୍ଥ କହନ୍ତି, "ହେଇ

ଦେଖନ୍ତୁ ପରା, ଶ୍ରୀଲକବିରାଜ ଗୋସ୍ୱାମୀ ଶ୍ରୀକୃଷ୍ଣଙ୍କ ପରି ଆଚରଣ କରିବା ଅବଶ୍ୟ କର୍ତ୍ତବ୍ୟ ବୋଲି ବିଧି ଦେଇଅଛନ୍ତି । ନ କଲେ ପୃଥ୍ୱୀ ଅନିଷ୍ଟ ହେବାର କଥା ।" ଏଥିରେ କି ନ ଭୁଲିବ କଏ । ଏଠାରେ ମୋର ଜଣେ ବଙ୍ଗୀୟ ପରମବନ୍ଧୁଙ୍କର କଥା ମନେ ପଡ଼ିବାରୁ ପାଠକମାନଙ୍କୁ ତାହା ଉପହାର ଦେଉଅଛି । ଏକ ସମୟରେ କେହି ସନ୍ଦିଗ୍ଧ ବୈଷ୍ଣବ ସେ ବନ୍ଧୁଙ୍କ ନିକଟ ଭିକ୍ଷାର୍ଥ ଉପସ୍ଥିତ ହେଲେ । ସେ ତାହାଙ୍କୁ ରହସ୍ୟପୂର୍ବକ ପଚାରିଲେ ବାବାଜି ମହାଶୟ ! ସାଧନ ଭଜନ କିରୂପ ହେଉଅଛି । ବାବାଜି ସରଳ ଭାବରେ ଉତ୍ତର କଲେ, "ମହାଶୟ ! ଜଳକେଳି ପର୍ଯ୍ୟନ୍ତ ଗଲଣି ରାସ ବାକି ଅଛି ।" ମୋର ବନ୍ଧୁ ତେତେବେଳେ ରଙ୍ଗ କରିବା ପାଇଁ ତାହାଙ୍କ ଚାକରମାନଙ୍କୁ ଡାକି କହିଲେ, "ଏ ବାବାଜି ମହାଶୟଙ୍କ ମସ୍ତକ ଉପରେ ଏକ ବୃହତ୍ ପଥର ଉଠାଇ ଲଦି ଦିଅତ, ସେ ଶ୍ରୀକୃଷ୍ଣଙ୍କର ଗୋବର୍ଦ୍ଧନଧାରଣ ଲୀଳା ଅଭିନୟ କରନ୍ତୁ ତାପରେ ସିନା ରାସକରିବେ" ବାବାଜି ଦେଖିଲେ ଅଚ୍ଛା ଏକ ବାବୁଙ୍କଠାରୁ ଭିକ୍ଷା ପାଇଁ ଆସିଲି, ଏ ଯେ ଭୀଷଣ କାଣ୍ଡ ଉପସ୍ଥିତ । ଯଦି ଶତ ଶତ ମୋ ଉପରେ ପଥର ଲଦି ଦିଅନ୍ତି ମୋର କି ଦୁର୍ଦ୍ଦଶା ନ ହେବ । ଏହି ରୂପ ଭାବି 'ନା ନା' ଏହି ରୂପ ଶବ୍ଦରେ କହି ପଳାଇଗଲେ । ଏହି ରହସ୍ୟମୟ ଉଦାହରଣଟି ଯେପରି ରାସଲୀଳା କରିବା ସମସ୍ତଙ୍କ ପ୍ରତି ପ୍ରୟୋଗ କଲେ ଅତି ଉତ୍ତମ ହୁଅନ୍ତା ।

ସେମାନେ ଅନ୍ତର କହନ୍ତି ମହାପ୍ରଭୁ ଯେ ପ୍ରକାଶ୍ୟରେ ଶିକ୍ଷା ଦେଇଥିଲେ ତାହା ବହିରଙ୍ଗମାନଙ୍କ ପାଇଁ, କିନ୍ତୁ ଅନ୍ତରଙ୍ଗମାନଙ୍କ ପ୍ରତି ମହାପ୍ରଭୁ ଯୁବତୀସହ ଲୀଳା କରିବାର ଶିକ୍ଷା ଦେଇଥିଲେ । ଏହାର ପୋଷକରେ ସେମାନେ ଦେଖାନ୍ତି, ଦେଖ ନାହିଁ, ମହାପ୍ରଭୁ ସର୍ବଦା ଶ୍ରୀ ରାମାନନ୍ଦ ଓ ଶ୍ରୀ ସ୍ୱରୂପଙ୍କ ସଙ୍ଗେ, ଶ୍ରୀ ଚଣ୍ଡୀଦାସ, ଶ୍ରୀ ବିଦ୍ୟାପତି, ଶ୍ରୀ ବିଲ୍ୱମଙ୍ଗଳ, ଶ୍ରୀ ଜୟଦେବ ଓ ଶ୍ରୀ ରାମାନନ୍ଦ ଏହି ପଞ୍ଚ ମହାଜନଙ୍କ ପଦାବଳୀ ଆସ୍ୱାଦନ କରୁଥିଲେ । ଏଥିରେ ମହାପ୍ରଭୁଙ୍କର ଏହି ପଞ୍ଚମହାଜନଙ୍କ ତୁଲ୍ୟ

ସ୍ତ୍ରୀସହ ଭଜନ ସାଧନ କରିବାର ଉପଦେଶ ଥିଲା । ଅହୋ ! କୁଅଭକ୍ତଙ୍କର ଲୋକମାନେ କି ବିଷମ ଘଟଣା ଘଟାଇ ନ ପାରନ୍ତି ! ଶ୍ରୀ ଭଗବାନଙ୍କ ପର୍ଯ୍ୟନ୍ତ ଦୋଷାରୋପ । ମହାପ୍ରଭୁଙ୍କର ଅତିପ୍ରିୟ ସ୍ୱୀ ସ୍ୱରୂପ ବରୁଣ୍ଡୀର ଶ୍ରୀଚୈତନ୍ୟ ଚରିତାମୃତରେ ଏତେ ଏତେ ପ୍ରବଳ ପ୍ରମାଣ ଥାଉଁ ଥାଉଁ, ସେ ଆଡ଼କୁ ଅଦୌ ଦୃଷ୍ଟି ନ ଦେଇ ଏ କପୋଳକଳ୍ପିତ ମିଥ୍ୟା ଦୋଷ ତାଙ୍କଉପରେ ଲଦିବା । ସେମାନଙ୍କ ଚକ୍ଷୁ ତ ଜ୍ଞାନରେ ଅନ୍ଧ । ସେମାନେ ପ୍ରେମଲୀଳା ବୁଝିବେ କାହିଁ ।

ପଞ୍ଚମହାଜନ ବୋଲି ସେମାନେ ଯେଉଁମାନଙ୍କୁ ସ୍ଥାପନ କରୁଅଛନ୍ତି ସେମାନଙ୍କ ବିଷୟ କିଛି ଆଲୋଚନା କରାଯାଉ । ଶ୍ରୀଲ ଚଣ୍ଡୀଦାସ ଓ ଶ୍ରୀଲ ବିଦ୍ୟାପତି ଏ ଦୁଇ ମହାତ୍ମା ଶ୍ରୀ ଭଗବାନଙ୍କର ବିଶେଷ କୃପାପାତ୍ର । ମହାପ୍ରଭୁଙ୍କ ଆବିର୍ଭାବ ପୂର୍ବରୁ ସେମାନଙ୍କର ଆବିର୍ଭାବ । ସେମାନଙ୍କ ସମୟରେ ଶ୍ରୀମଦ୍ଭାଗବତ ବର୍ଣ୍ଣିତ ରାସଲୀଳା ଓ ଶ୍ରୀକୃଷ୍ଣଙ୍କର ରସମୟୀ ବ୍ରଜଲୀଳା ଜନ ସାଧାରଣ ସେତେ ଉପଲବ୍ଧ କରି ନ ଥିଲେ । କେହି କେହି ଅତି ସୌଭାଗ୍ୟବାନ ବ୍ୟକ୍ତି ଏ ମହନୀୟ ଲୀଳାମାଧୁରୀର ଆସ୍ୱାଦନ ପାଇଥିଲେ । ଅତଏବ ଲୀଳାରସ ଆସ୍ୱାଦନର ପାତ୍ର ଅତି ଅଳ୍ପ ଥିବାରୁ ସେ ଦୁଇ ମହାତ୍ମା ସେ ଲୀଳାରସ ଅଭିଜ୍ଞ । କେହି କେହି ସ୍ତ୍ରୀଲୋକଙ୍କ ସଙ୍ଗେ ଶ୍ରୀରାଧାକୃଷ୍ଣଙ୍କ ମଧୁର ଲୀଳା ବିଷୟ ଚର୍ଚ୍ଚା କରୁଥିଲେ । ଏଥିପାଇଁ ସେମାନଙ୍କୁ ପର ରମଣୀମାନଙ୍କ ସଙ୍ଗେ କୁତ୍ସିତ କାମ କ୍ରୀଡ଼ାରେ ରତ ଥିଲେ ବୋଲି ଆରୋପ କରିବା ମହା ଅପରାଧଜନକ । ଶ୍ରୀ ଜଗନ୍ନାଥଦେବ ପଦ୍ମାବତୀଙ୍କର ପିତାଙ୍କୁ ସ୍ୱପ୍ନରେ ଆଦେଶ ଦେଲେ, ତୁମ୍ଭେ ଏ କନ୍ୟାକୁ ମୋର ପରମଭକ୍ତ ଶ୍ରୀ ଜୟଦେବଙ୍କୁ ପ୍ରଦାନ କର । ସେ ସ୍ୱପ୍ନାଦେଶ ପାଇ ପଦ୍ମାବତୀଙ୍କର ପିତା ସେ କନ୍ୟାକୁ ଆଣି ଶ୍ରୀଜୟଦେବଙ୍କୁ ଅର୍ପଣ କଲେ । ଶ୍ରୀଲ ଜୟଦେବ ଗୋସ୍ୱାମୀ ସେ କନ୍ୟାଙ୍କୁ ପ୍ରଥମେ ଗ୍ରହଣ କରୁ ନ ଥିଲେ, ପରେ ଏହା ଶ୍ରୀଜଗନ୍ନାଥ ଦେବଙ୍କର ଆଜ୍ଞା ଏହା ଜାଣି ତାହାକୁ ପତ୍ନୀରୂପେ

ଅଙ୍ଗୀକାର କଲେ ଓ ଏତ ପତ୍ନୀ ଭରତ୍ୱେ ଶ୍ରୀକୃଷ୍ଣ ସେବାରେ ରତ ହେଲେ । ଶ୍ରୀଲ ବିଲ୍ୱମଙ୍ଗଳଠାକୁର ପ୍ରଥମ ଜୀବନରେ ଚିନ୍ତାମଣି ନାମୀ ବେଶ୍ୟା-ଠାରେ ଅତ୍ୟନ୍ତ ଆସକ୍ତ ଥିଲେ । ପରେ ଘଟଣାକ୍ରମେ ସେହି ବେଶ୍ୟା ଉପଦେଶରୁ ତାହାଙ୍କର ଦିବ୍ୟଚକ୍ଷୁ ପ୍ରସ୍ଫୁଟିତ ହେଲା ଓ ସେହି ବେଶ୍ୟାକୁ ଆଦ୍ୟ ଗୁରୁ ମଣି, ପୂର୍ବ ଲୀମଞ୍ଚ୍ୟଭାବ ସମସ୍ତ ପରିତ୍ୟାଗ କରି ଶ୍ରୀଲ ସୋମଗିରିଙ୍କୁ ଆଶ୍ରୟପୂର୍ବକ ତାଙ୍କଠାରୁ ମନ୍ତ୍ର ଗ୍ରହଣ କଲେ ଓ କ୍ରମ ସାଧନ କରୁ କରୁ ତାହାଙ୍କର ସାଧନ ସିଦ୍ଧି ଅବସ୍ଥା ପ୍ରାପ୍ତ ହେଲା ଓ ଶ୍ରୀକୃଷ୍ଣ ସ୍ୱୟଂ ଦୁଗ୍ଧ ଦାନ ଛଳରେ ତାହାଙ୍କୁ ଦେଖାଦେଲେ । ତେତେ-ବେଳେ ସେ ଅନ୍ଧ ହୋଇଥିଲେହେଁ ଶ୍ରୀକୃଷ୍ଣଙ୍କ କୃପା ବଳରେ ତାହାଙ୍କର ମଧୁରରୂପ ଦେଖିବାକୁ ସମର୍ଥ ହେଲେ । ସେହି ଦର୍ଶନ ପୂର୍ବରୁ ସେ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଶ୍ରୀକୃଷ୍ଣ ବୋଲି ବୁଝିପାରି ଦୃଢ଼ କରି ଧରନ୍ତେ ଶ୍ରୀକୃଷ୍ଣ ତାହାଙ୍କ ହାତ ଛଡ଼ାଇ ପଳାଇ ଗଲେ । ତେତେବେଳେ ବିଲ୍ୱମଙ୍ଗଳ ଠାକୁର କହିଥିଲେ;

ହସ୍ତମୁତ୍କ୍ଷିପ୍ୟ ଯାତୋଽସି ବଳାତ୍ କୃଷ୍ଣକମଦ୍ଭୁତଂ ।
• ହୃଦୟାତ୍ ଯଦି ନିର୍ଯାସି ପୌରୁଷଂ ଗଣୟାମିତେ ॥

ହେ ଚଞ୍ଚଳ ଚୂଡ଼ାମଣି, ବନମାଳୀ ! ତୁ ବଳଶାଳୀ ଓ ଯଶୋ... ମୁଁ ବୃଦ୍ଧ, ଦୁର୍ବଳ ଓ ଅନ୍ଧ, ମୋ ହାତରୁ ଖସି ପଳାଇବା ତୋ ପକ୍ଷରେ ଅଚରଜ ନୁହେଁ । ମୋ ହୃଦୟରୁ ଯଦି ଖସି ପଳାଇ ପାରୁ ତେବେ ତୋହର ପୌରୁଷ ଜଣାଯିବ । ଭକ୍ତବତ୍ସଳ ଭଗବାନ ତ ଭକ୍ତଠାରେ ପ୍ରେମବନ୍ଧ-ନରେ ବନ୍ଧା ପଡ଼ିଅଛନ୍ତି,ସେ ପ୍ରେମଡୋରି କାଟିବାର ତାହାଙ୍କର ଶକ୍ତି କାହିଁ? ଏଭଳି ସତେଜରେ ଭକ୍ତି କେବଳ ସେହି ବିଲ୍ୱମଙ୍ଗଳଙ୍କଠାରେ ସାଜେ । ଅନ୍ୟ କିଏ ଶ୍ରୀଭଗବାନଙ୍କୁ ଏପରି କଥା କହିପାରିବ । ଶ୍ରୀଲ ରାମାନନ୍ଦ ରାୟ ବ୍ରଜର ବିଶାଖା ସଖୀ । ସେ ବିଦ୍ୟାନଗର ରାଜ୍ୟର ବିଶିଷ୍ଟ ବ୍ୟକ୍ତି ଓ ତାଙ୍କ ତତ୍ତ୍ୱ ପ୍ରାକୃତ

କାମର ଅଧିକାର ଭକ୍ତ ନୁହେଁ । ସେ ଦୁଇଜଣ ଅଳ୍ପବୟସ୍କା କିଶୋରୀ କୁମାରୀଙ୍କୁ ତାହାଙ୍କ ଜନକକୃତ ଶ୍ରୀଜଗନ୍ନାଥ ବଲ୍ଲଭ ନାଟକର ଗୀତମାନ ଅଭ୍ୟାସ କରାଇ ଓ ସେମାନଙ୍କୁ କରଚାଳନ, ପଦଚାଳନ ଓ ଚକ୍ଷୁଚାଳନ ଆଦି ହାବଭାବ ସହିତ ନୃତ୍ୟ ଶିକ୍ଷା ଦେଇ ନିଜେ ସେମାନଙ୍କୁ ବେଶଭୂଷାରେ ଅଳଂକୃତ କରି ଶ୍ରୀ ଜଗନ୍ନାଥଦେବଙ୍କୁ ସେମାନଙ୍କର ମଧୁର ନୃତ୍ୟ ଗୀତ ଦେଖାନ୍ତି ଓ ଶୁଣାନ୍ତି । ମହାପ୍ରଭୁ ବଙ୍ଗଳାଗତ ଶ୍ରୀପ୍ରଦ୍ୟୁମ୍ନ ମିଶ୍ରଙ୍କୁ ସେହି ଶ୍ରୀଲ ରାମାନନ୍ଦଠାରୁ କୃଷ୍ଣକଥା ଶୁଣିବାକୁ ପଠାଇଥିଲେ । ଶ୍ରୀ ପ୍ରଦ୍ୟୁମ୍ନ ମିଶ୍ର ପ୍ରଥମ ଦିନ ରାୟ ମହାଶୟ ସେ ଦେବଦାସୀମାନଙ୍କୁ ନୃତ୍ୟ ଶିକ୍ଷା ଦେଉଥିବାରୁ ଅନେକ କାଳ ଅପେକ୍ଷା କରି ପରେ କେବଳ ରାୟଙ୍କୁ ଦେଖାକରି ଫେରି ଆସିଲେ । ତାହାଙ୍କ ମନରେ ରାମାନନ୍ଦଙ୍କ କାର୍ଯ୍ୟ ପ୍ରତି ସନ୍ଦେହ ଜାତ ହୋଇଥିଲା ଓ ବେଳ ମଧ୍ୟ ଗଡ଼ି ଯାଇଥିଲା । ସେ ପରଦିନ ମହାପ୍ରଭୁଙ୍କ ପାଖକୁ ଯାଆନ୍ତେ ମହାପ୍ରଭୁ ପଚାରିଲେ, ମିଶ୍ର ମହାଶୟ ! ରାୟଙ୍କଠାରୁ ଶ୍ରୀକୃଷ୍ଣ କଥା ଶୁଣିଲେ ? ପ୍ରଦ୍ୟୁମ୍ନ ମିଶ୍ର ସରଳଭାବରେ ସମସ୍ତ ପ୍ରକାଶ କଲେ । ସେତେବେଳେ ମହାପ୍ରଭୁ ଦେଖିଲେ, ମୁଁ ଯଦି ବର୍ତ୍ତମାନ ଏହାଙ୍କର ସଂଶୟ ଛେଦନ ନ କରେଁ, କେତେକ ଲୋକଙ୍କ ମନରେ ରାୟ ରାମାନନ୍ଦଙ୍କ କାର୍ଯ୍ୟ ପ୍ରତି ସନ୍ଦେହ ଆସିବ । ତଦ୍ଦ୍ୱାରା ସେମାନଙ୍କର ଧର୍ମଜୀବନର ଶ୍ରୀ ରାମାନନ୍ଦଙ୍କଠାରେ ମହତ ଅପରାଧ ଜାତ ହେବ । ତେଣୁ ସେ ସ୍ପଷ୍ଟଭାବରେ କହିଲେ, ଏହା ରାମାନନ୍ଦହିଁ ସେଭଳି ଅଧିକାରୀ ପୁରୁଷ । ଏହାଙ୍କର ଦେହ ଅପ୍ରାକୃତ ଓ ତେଣୁ ଲେଶମାତ୍ର ବିକାର ନାହିଁ, ଯଥା:—

ଏକ ରାମାନନ୍ଦେର ହୟ ଏଇ ଅଧିକାର ।
ତାତେ ଜାନି ଅପ୍ରାକୃତ ଦେହ ତାଁହାର ॥

( ଚୈଃ ଅନ୍ତ୍ୟ ୫ ପରି )

ଏହାକହି ରାମାନନ୍ଦଙ୍କ ବିଶେଷ ଗୁଣମାନ ବ୍ୟାଖ୍ୟାନ କଲେ ।

ଏହିସବୁ ସାଧୁମହାଜନଙ୍କ କଥା ମୁଁ ଉଦ୍ଧୃତ ଦେଖାଇଲି । ଏହାକୁ ଭଲରୂପେ ବିଚାରକରି ଦେଖନ୍ତୁ । ଏଥିରେ ପରସ୍ତ୍ରୀସହ ପ୍ରେମଧର୍ମ ସାଧନର କିଛି ଲେଶମାତ୍ର ଗନ୍ଧ ଅଛି କି । ବିଶେଷତଃ ଜଡ଼ଦେହନେ ଚ-ମେଧ୍ୟ ବୃନ୍ଦାବନକୁ ଯିବନାହିଁ, ସାଧନ ପୂର୍ଣ୍ଣହେଲେ ଚିନ୍ମୟଦେହ ନେଇ ବ୍ରଜରେ ଜନ୍ମିବାକୁ ହେବ । ଅତଏବ ପ୍ରକୃତ ସାଧନଟି ମାନସିକ ବ୍ୟାପାର । ଏଜଡ଼ ଦେହରେ ଅତି ପ୍ରବଳତା କାମନାମାତ୍ର ପୂର୍ବ ପୂର୍ଣ୍ଣମାତ୍ରରେ ଅଧିକାର ଥାଇଁ ଥାଇଁ ପ୍ରକୃତିସହ ସାଧନ କେଉଁ ଶାସ୍ତ୍ରାନୁମୋଦିତ । ମହାପ୍ରଭୁ ସେଥିପାଇଁ ଲୋକଙ୍କୁ ବାରମ୍ବାର ସାବଧାନ ହେବାକୁ ଉପଦେଶ ଦେଇଅଛନ୍ତି । ଉଜ୍ଜ୍ୱଳ ରସ ଚିନ୍ତାମଣି ନାମକ ଖଣ୍ଡିଏ ବଙ୍ଗଳା ପୁସ୍ତକ ଦୈବକ୍ରମେ ମୋ ହାତରେ ପଡ଼ିଥିଲା । ସେଥିରେ ଏହିସବୁ ପ୍ରକୃତିସହ ସାଧନ ଗୌଡ଼ୀୟ ବୈଷ୍ଣବ ଧର୍ମ ସମ୍ମତବୋଲି ପ୍ରତିପାଦିତ ହୋଇଅଛି । ଲେଖକ ଶାସ୍ତ୍ର ମର୍ମକୁ ନିଜ ବୁଦ୍ଧି-ବଳ ଦ୍ୱାରା ଏରୂପ କୌଶଳକ୍ରମେ ବର୍ଣ୍ଣନ କରିଅଛନ୍ତି ଯେ ଯେଉଁମାନେ ବୈଷ୍ଣବ ଶାସ୍ତ୍ରକୁ ଉତ୍ତମରୂପେ ଆଲୋଚନା କରିନଥିବେ ସେମାନେ ସେ ପୁସ୍ତକ ପାଠକଲେ ସେ କୁତ୍ସିତ କ୍ରିୟାକୁ ଶାସ୍ତ୍ର ସମ୍ମତବୋଲି ମନେକରିବେ । ଧନ୍ୟ ମାୟା, ଧନ୍ୟ ତୋହର କୁହୁକିନୀ ଶକ୍ତି । ବିଷ୍ଠାକୁ ଯେତେ ଘାଣ୍ଟିବ ତେତେ ଦୁର୍ଗନ୍ଧ ବାହାରିବ । ଅତଏବ ଏସବୁ ଅତିଘୃଣ୍ୟ ବିଷୟମାନ ଅତି ଅଧିକ ଚର୍ଚ୍ଚା କରିବା ନିଷ୍ପ୍ରୟୋଜନ ।

ଶେଷରେ ଉତ୍କଳର ରାଜା, ମହାରାଜ, ଧନୀ, ଜମିଦାର ଓ ଶିକ୍ଷିତ ଲୋକମାନଙ୍କୁ ମୋର ଏହି ନିବେଦନ ସେମାନେ ବୈଷ୍ଣବ ପ୍ରଧାନ ଉତ୍କଳ ଦେଶରେ ଗୌଡ଼ୀୟ ବୈଷ୍ଣବ ଶାସ୍ତ୍ର ଯେପରି ଭଲରୂପେ ଶିକ୍ଷା ଦିଆଯାଇ-ପାରେ ତାହାର ଚେଷ୍ଟା କରନ୍ତୁ । ବୈଷ୍ଣବ ଶାସ୍ତ୍ରର ମର୍ମ ଉତ୍ତମରୂପେ ଆଲୋଚିତହେଲେ ଏସବୁ ଆବର୍ଜନା ଆପେ ଆପେ ଅପସାରିତ ହୋଇଯିବ ।

ଶ୍ରୀଧାମ ବୃନ୍ଦାବନ
୫।୭।୨୭ } ଶ୍ରୀ ପଦ୍ମଚରଣ ଦାସ ।

# ବିଜ୍ଞାପନ ।



ବାବାଜି ଶ୍ରୀ ପଦ୍ମଚରଣ ଦାସଙ୍କ ରଚିତ ଓ ପ୍ରକାଶିତ ନିମ୍ନଲିଖିତ ପୁସ୍ତକମାନ ଶ୍ରୀ ରାଧା କୃଷ୍ଣ ବସୁ ଏମ, ଏ, ବାଲୁବଜାର, କଟକ, ପଣ୍ଡିତ ଶ୍ରୀ ଅକ୍ରୁର ମିଶ୍ର, ମେନେଜର, କଟକ ଟ୍ରେଡିଂ କୋମ୍ପାନୀ ବାଲୁବଜାର, ଷ୍ଟୁଡେଣ୍ଟସ୍ ଷ୍ଟୋର, ବରହମପୁର ଗଞ୍ଜାମ ଓ ଅସ୍ମଠାରେ ପ୍ରାପ୍ତବ୍ୟ ।

| | | | |
|---|---|---|---|
| ୧ | ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତ ( ଆଦି, ମଧ୍ୟ ଓ ଅନ୍ତ୍ୟଲୀଳା) | | ଟ ୬୲ |
| ୨ | ବ୍ରଜବିହାର | ୧ମ ଭାଗ ୨ୟ ସଂସ୍କରଣ | ଟ ୧୲ |
| ୩ | ,, | ୨ୟ ଭାଗ | ଟ ୧୲ |
| ୪ | ଶ୍ରୀ ଚୈତନ୍ୟ ଚନ୍ଦ୍ରାମୃତ ( ମୂଳ ପଦ୍ୟାନୁବାଦ ) | | ଟ ୦ ।/ |
| ୫ | ଶ୍ରୀ ପ୍ରତାପରୁଦ୍ର ନାଟକ | | ଟ ୦ । |
| ୬ | ଓଡ଼ିଆ କୀର୍ତ୍ତନ | ୧ମ ଭାଗ | ଟ ୦ ୳ |
| ୭ | ,, ,, | ୨ୟ ଭାଗ | ଟ ୦ ୳ |
| ୮ | ଠାକୁର ଶ୍ରୀ ହରିଦାସ | | ଟ ୦ ୳/ |
| ୯ | ସଙ୍ଗୀତ ଭାବବନ୍ଧ | ୧ମ ଦ୍ୱାର | ଟ ୦ ।/ |
| ୧୦ | ,, ,, | ୨ୟ ଦ୍ୱାର | ଟ ୦ । |
| ୧୧ | ଶ୍ରୀ ଶ୍ରୀ ସ୍ୱପ୍ନ ସମାନନ୍ଦ | | ଟ ୧୲ |
| ୧୨ | ଭକ୍ତିକଥା | | ଟ ୧୳ |

ବାଙ୍କାବଜାର, ବଳୋଦବଜାର
କଟକ ।



ଶ୍ରୀ ମଧୁସୂଦନ ଦାସ ।

